# ଆମ ପୃଥିବୀ ଓ ଜୀବ ଜଗତ



ରବୀନ୍ଦ୍ର ମୋହନ ସେନାପତି

# ସୂଚୀ

# ଆମ ପୃଥିବୀ ଓ ଜୀବଜଗତ

ଆମେ ରହୁଥିବା ପୃଥିବୀ ଉତପ୍ତ ଜ୍ୱଳନ୍ତ ପିଣ୍ଡରୁ ବର୍ତ୍ତମାନ ମାଟି ଉପରେ ସବୁଜିମା ଓ ନୀଳ ସମୁଦ୍ରର ଦେଶ ହୋଇଛି । ଏକଦା ପାହାଡ଼—ଆଗ୍ନେୟଗିରି ବେଷ୍ଟିତ ଓ ବିଷାକ୍ତ ଗ୍ୟାସ୍ ଭରପୂର ପୃଥିବୀ, ପରେ ପରିବର୍ତ୍ତିତ ହୋଇଛି— ପାହାଡ଼ସବୁ ଉର୍ବର ମାଟିଦ୍ୱାରା, ଭୂପୃଷ୍ଠ ଜଳଦ୍ୱାରା ଓ ବାୟୁମଣ୍ଡଳ ଅମ୍ଳଜାନ ଗ୍ୟାସ୍ଦ୍ୱାରା ଆବୃତ ହୋଇଛି । ପୃଥିବୀର ୪.୬ ବିଲିୟନ ବର୍ଷ ଇତିହାସରେ ନିୟୁତସଂଖ୍ୟକ ଗଛଲତା ଓ ଜୀବଜନ୍ତୁ ଉଦ୍‌ଭବ ହୋଇ ଆସିଛନ୍ତି ଓ ଯାଇଛନ୍ତି । ନୂଆ ପର୍ବତମାଳା ସୃଷ୍ଟି ହୋଇଛି । ମହାଦେଶସବୁ ପ୍ରଥମେ ଗଠିତ ହୋଇଛି । ପୁଣି ସେଗୁଡ଼ିକ ଭାଙ୍ଗି ନୂଆ ଆକାରର ମହାଦେଶମାନ ଦେଖା ଦେଇଛି । ବର୍ତ୍ତମାନ ପୃଥିବୀରେ ପ୍ରାୟ ୨ରୁ ୩୦ ନିୟୁତ ବିଭିନ୍ନ ରକମର ବୃକ୍ଷଲତା ଓ ଜୀବଜନ୍ତୁ ଅଛନ୍ତି । ପ୍ରତିବର୍ଷ ଦଶହଜାର ନୂଆ ଜାତିର ଜନ୍ତୁ ଓ ପାଞ୍ଚହଜାର ନୂଆ ଜାତିର ଉଦ୍ଭିଦ ଆବିଷ୍କୃତ ହେଉଛି । କିନ୍ତୁ ଏକଦା ପୃଥିବୀରେ ୫୦୦ ନିୟୁତ ଜାତିର ଜୀବନ୍ତ ପଦାର୍ଥ ଥିଲେ । ଏଥିରୁ କାଳକ୍ରମେ ଅଧିକାଂଶ ନିଶ୍ଚିହ୍ନ ହୋଇଥିଲେ । ନୂତନ ବିବର୍ତ୍ତନ ଫଳରେ ନୂଆ ନୂଆ ଜାତିର ଜୀବମାନଙ୍କର ସୃଷ୍ଟି ହେଲା । ଶେଷରେ ମନୁଷ୍ୟର ସୃଷ୍ଟି ହେଲା । ଏସବୁ ବିଷୟରେ ଆମେ ପାହାଡ଼, ଶିଳା ଓ ତା' ମଧ୍ୟରେ ଥିବା ଜୀବାଶ୍ମ (ଫସିଲ)ରୁ ଜାଣୁ ।

# ପୃଥିବୀର ଉତ୍ପତ୍ତି

ବିଶ୍ୱରେ ଅର୍ଥାତ୍ ମହାକାଶରେ ଏକ ଲକ୍ଷ ନିୟୁତ ଗାଲାକ୍ସି ଅଛି ଏବଂ ପ୍ରତି ଗାଲାକ୍ସିରେ ୧୦୦ ବିଲିୟନ ନକ୍ଷତ୍ର ଅଛନ୍ତି । ଏହି ନକ୍ଷତ୍ରମାନଙ୍କ ଚାରିପାଖରେ ଗ୍ରହ ଓ ଉପଗ୍ରହମାନ ମଧ୍ୟ ଥାଇପାରେ । ଆମର ସୌରଜଗତ ଯେଉଁଥିରେ ପୃଥିବୀ ଅଛି, ତାହା ମିଲକି ୱେ ଗାଲାକ୍ସିର ଅନ୍ତର୍ଭୁକ୍ତ । ସୌରଜଗତ କିପରି ସୃଷ୍ଟି ହେଲା ଆମେ ଜାଣୁ । ଗାଲାକ୍ସିମାନେ ୧-୨ ବିଲିୟନ ବର୍ଷ ପୂର୍ବେ ସୃଷ୍ଟି ହୋଇଥିଲେ । ତାହାର ୮ ବିଲିୟନ ବର୍ଷ ପରେ ସୌରଜଗତ ସୃଷ୍ଟି ହେଲା । ବସ୍ତୁଗୁଡ଼ିକ ଧୂଳି ଓ ଗ୍ୟାସ୍ ଆକାରରେ ଥିଲେ ଏବଂ ଏଗୁଡ଼ିକ ମେଘ

ଭାବରେ ଦେଖାଦେଲେ ଯାହାକୁ ନେବୁଲି କୁହାଗଲା । ଗୋଟିଏ ନେବୁଲି ଗ୍ୟାସ୍‌ପିଣ୍ଡ—ତା'ର ନାମ ସୌର ନେବୁଲି—ଘନୀଭୂତ ହୋଇ ସୂର୍ଯ୍ୟ ହେଲା । ନେବୁଲିର ଅନ୍ୟ ଅଂଶ ଘନୀଭୂତ ହୋଇ ଗ୍ରହମାନ ସୃଷ୍ଟି ହେଲା । ପୃଥିବୀ ସେହିପରି ଗୋଟିଏ ଗ୍ରହ । ଏହି ଗ୍ରହଗୁଡ଼ିକ ସୂର୍ଯ୍ୟର ମାଧ୍ୟାକର୍ଷଣ ଶକ୍ତି ବଳରେ ସୂର୍ଯ୍ୟ ଚାରିପାଖରେ ଘୂରିବାକୁ ଲାଗିଲେ । ସୂର୍ଯ୍ୟ ଯାହାକି ଏକ ନକ୍ଷତ୍ର ତାହାର ଗ୍ୟାସ୍ ଘନୀଭୂତ ହେବା ଫଳରେ ଏହାର କେନ୍ଦ୍ରରେ ଚାପ ବୃଦ୍ଧି ପାଇଲା ଏବଂ ଉତ୍ତାପ ବଢ଼ିଲା । ଏହା ଫଳରେ ଉଦଜାନ ଗ୍ୟାସ୍‌ର ମିଶ୍ରଣ ହୋଇ ହିଲିୟମ୍ ଗ୍ୟାସ୍ ହେଲା ଏବଂ ଏଥିରୁ ଆହୁରି ଶକ୍ତି ଉତ୍ପନ୍ନ ହେଲା ।

ପୃଥିବୀ ଗ୍ରହରେ, ଯାହା ସୂର୍ଯ୍ୟ ନକ୍ଷତ୍ର ଚାରିପଟେ ଘୂରୁଛି, ସେଥିରେ ମଧ୍ୟ ଅନୁରୂପ ଘଟଣା ଘଟୁଥିଲା । ପୃଥିବୀର ଉତ୍ତାପ ଏତେ ଥିଲା ଯେ, ଏହାର କେନ୍ଦ୍ରରେ ଥିବା ଶିଳାଗୁଡ଼ିକ ତରଳିଗଲେ ଏବଂ ତରଳ ଲୁହା ଓ ନିକେଲ କେନ୍ଦ୍ର ଭାଗରେ ରହିଲେ । ତା' ଉପରେ ହାଲୁକା ବସ୍ତୁ ଯଥା ବାଲିଜାତୀୟ ପଦାର୍ଥ ବା ସିଲିକନ ଭୂପୃଷ୍ଠ ହୋଇ ଭାସୁଛି । ବିଲିୟନ ବର୍ଷ ପରେ ପୃଥିବୀର ଏହି ପୃଷ୍ଠ ବା ଉପରିଭାଗ କଠିନ ଶିଳାରେ ପରିଣତ ହୋଇଛି । ପୃଥିବୀ ଥଣ୍ଡା ହେବା ପରେ ପୃଥିବୀର କେନ୍ଦ୍ରରୁ ଗ୍ୟାସ୍‌ଗୁଡ଼ିକ ଆଗ୍ନେୟଗିରି ବାଟେ ନିର୍ଗତ ହେଲେ । ପୃଥିବୀ ଉପରେ ଥିବା ଉଦଜାନ ଗ୍ୟାସ୍ ମହାକାଶକୁ ନିର୍ଗତ ହେଲା । କିନ୍ତୁ ଭାରୀ ଗ୍ୟାସ୍‌ଗୁଡ଼ିକ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଯୋଗୁଁ ରହିଗଲେ ଏବଂ ତାହା ବାୟୁମଣ୍ଡଳ ସୃଷ୍ଟି କଲା । ଜଳୀୟବାଷ୍ପ ଘନୀଭୂତ ହୋଇ ବର୍ଷା ହେଲା ଓ ସମୁଦ୍ର ସୃଷ୍ଟି ହେଲା । ଶେଷରେ ପୃଥିବୀରେ ଏଥିଯୋଗୁଁ ଜୀବନର ଉତ୍ପତ୍ତି ସମ୍ଭବପର ହେଲା ।

# ପୃଥିବୀର ଗଠନ

ପିଆଜରେ ଚୋପାର ସ୍ତର ସ୍ତର ପରି ପୃଥିବୀ ଗଠିତ । ପୃଥିବୀର ସବା ଉପରିଭାଗକୁ ଲିଥୋସ୍ଫିୟର କହନ୍ତି ଯାହାର ଗଭୀରତା ୭୫ କିଲୋମିଟର । ପୃଥିବୀର କେନ୍ଦ୍ର ଲୁହା ଓ ନିକେଲ ଭାରୀ ଧାତୁରେ ଗଠିତ । ଏହାକୁ କୋର କହନ୍ତି । ଏହାର ଚାରିପାଖେ ଶିଳାରେ ଗଠିତ ମ୍ୟାଣ୍ଟଲ ଅଛି । ଏହା ପ୍ରାୟତଃ କଠିନ ଓ ବାଲିର ପଦାର୍ଥ, ଯଥା : ସିଲିକେଟ୍‌ସ୍‌ଦ୍ୱାରା ଗଠିତ । ଏହାର ବାହାର ଭାଗରେ ଭୂପୃଷ୍ଠ ବା କ୍ରଷ୍ଟ ଅଛି, ଯାହା କଠିନ ଶିଳାଦ୍ୱାରା ଗଠିତ ଏବଂ ଏହା ମାଟି ଓ ଉଦ୍ଭିଦ ଦ୍ୱାରା ଆଚ୍ଛାଦିତ ।




ପୃଥିବୀର ଗଠନ

ପୃଥିବୀର କେନ୍ଦ୍ରରୁ ତରଳବସ୍ତୁ ପୃଥିବୀର ଫାଟ ବା ଆଗ୍ନେୟଗିରି ଦେଇ ଭୂପୃଷ୍ଠକୁ ଆସେ ଏବଂ ଲାଭା ହୋଇ ବହିଯାଏ । ଏହା ଶୀତଳ ଓ କଠିନ ହେଲେ ଶିଳା ହୁଏ । ଏହାକୁ ଇଗନିୟସ ଶିଳା କୁହାଯାଏ । ଅନ୍ୟ କେତେକ ପ୍ରକାରର ଶିଳା ସ୍ତର ସ୍ତର ହୋଇ ଦେଖାଯାଏ । ଭୂପୃଷ୍ଠରେ ଥିବା ଶିଳା, ନଦୀ, ପବନ ଓ ବର୍ଷାଦ୍ୱାରା କ୍ଷୟ ହୋଇ ସେଡିମେଣ୍ଟ ହୋଇ ସମୁଦ୍ରରେ ପଡ଼ିଥାଏ । ଏହା ସମୁଦ୍ର ତଳେ ହଜାର ହଜାର ମିଟର ଗଭୀରତାରେ ବହଳ ହୋଇ ରହେ । ଏହାକୁ ସେଡିମେଣ୍ଟାରି ଶିଳା କହନ୍ତି । ଇଗନିୟସ୍ ଏବଂ ସେଡିମେଣ୍ଟାରି ଶିଳା ସ୍ତରମାନ ପୃଥିବୀ ପୃଷ୍ଠର ଗତିଶୀଳତା ଯୋଗୁଁ ନୂଆ ପର୍ବତ ଶ୍ରେଣୀ ସୃଷ୍ଟି କରେ । ଅନେକ ସମୟରେ ଉତ୍ତାପ ଯୋଗୁଁ ଗୋଟିଏ ଶିଳାର ଖଣିଜ ଅଂଶ ଅନ୍ୟ

ଖଣିଜ ଅଂଶକୁ ଶିଳାଭାବରେ ପରିବର୍ତ୍ତନ ହୋଇଥାଏ । ଏହାକୁ ମେଟାମରଫିକ୍ ଶିଳା କୁହନ୍ତି । ପୃଥିବୀର ନିୟୁତ ବର୍ଷର ଇତିହାସରେ ପର୍ବତମାଳାମାନ ସୃଷ୍ଟି ହୋଇଛି । ଶିଳାସବୁ ଓ ଖଣିଜ ପଦାର୍ଥ ପବନ ଓ ପାଣିଦ୍ୱାରା ହୁଗୁଳା ହୋଇ ନଦୀକୁ ସ୍ଥାନାନ୍ତରିତ ହୋଇଛନ୍ତି ।

# ପାହାଡ଼ ଓ ଶିଳା

ପୃଥିବୀର ଇତିହାସ, ତା' ଉପରେ ଥିବା ପାହାଡ଼ ଓ ଶିଳାରୁ ମିଳେ । ସାଧାରଣତଃ ସବୁଠାରୁ ପୁରୁଣା ଶିଳା ପୃଥିବୀର ତଳେ ଓ ସଦ୍ୟଜାତ ଶିଳା ପୃଥିବୀର ଉପରେ ଥାଏ । କିନ୍ତୁ ଶିଳାଗୁଡ଼ିକ ଏପରି ଭାବରେ ମଧ ନ ରହି ପାରନ୍ତି । ପୃଥିବୀ ମଧରେ ପ୍ରଚଣ୍ଡ ଶକ୍ତି ବଳରେ ନୂଆ ପର୍ବତ ସୃଷ୍ଟି ହୁଏ । ଏହା ଫଳରେ ପୁରୁଣା ଶିଳା ଉପରକୁ ଆସେ ।

କିପରି ଭାବରେ ପୃଥିବୀରେ ଶିଳାମାନ ଗଠିତ ହୋଇଥିଲା, ତାହାର ସୂତ୍ର ଫସିଲ ବା ଜୀବାଶ୍ମରୁ ମିଳେ । ଜୀବାଶ୍ମ ବା ଫସିଲ ହେଉଛି ଉଦ୍ଭିଦ ଓ ଜୀବଜନ୍ତୁଙ୍କ ଶରୀରର ଅବଶେଷାଂଶ, ଯାହା ପାହାଡ଼ ଓ ଶିଳା ମଧରେ ସୁରକ୍ଷିତ ଅଛି । ନିୟୁତ ବର୍ଷ ଧରି ପୃଥିବୀର ଜଳବାୟୁ ବଦଳିଛି ଏବଂ ଏହା ସହିତ ପୃଥିବୀରେ ବାସ କରୁଥିବା ଉଦ୍ଭିଦ ଓ ଜୀବଜନ୍ତୁମାନ ମଧ ବଦଳିଛନ୍ତି । ଏହି ଉଦ୍ଭିଦ ଓ ଜୀବଜନ୍ତୁମାନଙ୍କ ଫସିଲ କେବଳ ସେଡିମେଣ୍ଟାରି ଶିଳାରେ ଥାଏ । ବୈଜ୍ଞାନିକମାନେ ପୃଥିବୀର ପ୍ରାଚୀନତମ ଶିଳା ଚାରି ବିଲିୟନ ବର୍ଷ ପୂର୍ବେ ସୃଷ୍ଟି ହୋଇଥିଲା ବୋଲି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ।

ଆଗ୍ନେୟଗିରିରୁ ଜାତ ଇଗନିୟସ ଶିଳାର ବୟସ ରେଡିଓ ଆଇସୋଟପ୍‌ଦ୍ୱାରା ଜଣାପଡ଼େ । ପୃଥିବୀର କେନ୍ଦ୍ରରେ ତରଳ ଲୁହା ଅଛି ଏବଂ ଏହା ଯେତେବେଳେ ନିଜ ଚାରିପାଖରେ ଘୂରେ, ଏହା ବଡ଼ ବଡ଼ ଚୁମ୍ବକ ଭଳି କାମ କରେ । ଚୁମ୍ବକର ଉତ୍ତର ଓ ଦକ୍ଷିଣ ଅଂଶ ସବୁବେଳେ ଉତ୍ତର ଓ ଦକ୍ଷିଣ ମେରୁରେ ନ ଥାଏ ।

# ମହାଦେଶମାନଙ୍କର ଚଳନ ବା ଗତି

ଏକଦା ସବୁ ମହାଦେଶ (କଣ୍ଟିନେଣ୍ଟ)ମାନଙ୍କୁ ନେଇ ପାଞ୍ଜିଆ ନାମକ ଏକ ସୁପର ମହାଦେଶ ଗଠିତ ହୋଇଥିଲା । ସେହି ସୁପର ମହାଦେଶରେ ସେହି କାଳରେ ଲିଷ୍ଟ୍ରୋସରସ୍, ମେସୋସରସ୍ ଇତ୍ୟାଦି ଜନ୍ତୁମାନେ ଥିଲେ । ଏହି ସୁପର ମହାଦେଶ ଭାଙ୍ଗି ଅଲଗା ଅଲଗା ମହାଦେଶ ହେଲେ । ଏହି ଅଲଗା ମହାଦେଶମାନଙ୍କରେ ଏକାଜାତୀୟ ଜନ୍ତୁ ଦେଖା ଦେଇଥିଲେ, ଯେଉଁଥିରୁ ପ୍ରମାଣିତ ହେଲା ଯେ ଏହି ମହାଦେଶଗୁଡ଼ିକ ଏକଦା ଏକାଠି ଥିଲେ 'ପାଞ୍ଜିଆ' ସୁପର (ଅତିକାୟ) ମହାଦେଶରେ ।



ପଞ୍ଜିଆ ପୂର୍ବରୁ



ପାଞ୍ଜିଆ

ପୃଥିବୀର ଭୂପୃଷ୍ଠ କେତେଗୁଡ଼ିଏ ପ୍ଲେଟ୍ ଦ୍ୱାରା ଗଠିତ ଯାହା ସବୁବେଳେ ଗତି କରୁଛି । ଦୁଇଟି ପ୍ଲେଟ୍ ଏକାଠି ହେଲେ ସୀମାନ୍ତରେ ବଙ୍କେଇ ଯାଆନ୍ତି କିମ୍ବା ଗୋଟିଏ ପ୍ଲେଟ୍ ଆଉ ଗୋଟିଏ ପ୍ଲେଟ୍ ତଳକୁ ଯାଏ । ପ୍ଲେଟ୍‌ଗୁଡ଼ିକ ମହାଦେଶ ଓ ସମୁଦ୍ରକୁ ନେଇ ଗଠିତ । ଯେଉଁ ପ୍ରକ୍ରିୟା ପୃଥିବୀ ଭୂପୃଷ୍ଠରେ ପ୍ଲେଟ୍‌ଗୁଡ଼ିକ ଗତି କରିବାରେ ସାହାଯ୍ୟ କରେ, ତାକୁ ପ୍ଲେଟ୍ ଟେକ୍‌ଟୋନିକ୍ସ କହନ୍ତି ।



ମହାଦେଶମାନଙ୍କର ଆକାର ଓ ପ୍ରକାର ବରାବର ମନ୍ଥର ଗତିରେ ବଦଳୁଛି । ଏହାକୁ ମହାଦେଶମାନଙ୍କର ଚଳନ (କଣ୍ଟିନେଣ୍ଟାଲ ଡ୍ରିଫଟ୍) କହନ୍ତି । ପାଞ୍ଜିଆ ସୁପର ମହାଦେଶ ୩୦୦ ନିୟୁତ ବର୍ଷ ପୂର୍ବେ ଭାଙ୍ଗିବାରୁ ଆଫ୍ରିକା ଓ ଦକ୍ଷିଣ ଆମେରିକା ମହାଦେଶ ବିଚ୍ଛିନ୍ନ ହେଲା ଏବଂ ଏହି ଦୁହିଁଙ୍କ ମଝିରେ ଆଟଲାଣ୍ଟିକ୍ ମହାସାଗର ହେଲା । ଦକ୍ଷିଣ ମହାଦେଶକୁ ଗଣ୍ଡୱାନାଲାଣ୍ଡ କୁହାଗଲା । ତା'ପରେ ଉତ୍ତର ମହାଦେଶ 'ଲରେସିଆ' ଭାଙ୍ଗିବାରୁ ଉତ୍ତର ଆମେରିକା ଇଉରୋପଠାରୁ ବିଚ୍ଛିନ୍ନ ହେଲା । ଏସବୁ ଘଟିବାକୁ ନିୟୁତ ବର୍ଷ ଲାଗିଛି ।

ସମୁଦ୍ର ତଳେ ବଡ଼ ବଡ଼ ପର୍ବତଶ୍ରେଣୀ ମଧ୍ୟ ଅଛି । ଏଗୁଡ଼ିକ ସମୁଦ୍ର ତଳ ଆଗ୍ନେୟଗିରି କିମ୍ବା ସମୁଦ୍ର ପତ୍ତନତଳ ଫାଟ ହେବାରୁ ଗଠିତ ହୋଇଛି ଯାହା ବାଟ ଦେଇ ତରଳ ଲାଭା ବାହାରେ । ଯେଉଁ ଜାଗାରେ ସମୁଦ୍ରରୁ ପର୍ବତଗୁଡ଼ିକ ଉପରକୁ ଉଠେ, ସେଠି ଦ୍ୱୀପପୁଞ୍ଜ ସୃଷ୍ଟି ହୁଏ । ଆଇସଲାଣ୍ଡ ଦେଶ ଗୋଟିଏ ଉଦାହରଣ—ଯେଉଁଠାରେ ଏବେବି ଆଗ୍ନେୟଗିରି ଅଛି । ସ୍ଥଳଭାଗରେ ମଧ୍ୟ ଏହିପରି ଫାଟ ସୃଷ୍ଟି ହେଉଛି । ଆଫ୍ରିକାର ଉତ୍ତର-ପୂର୍ବ କୋଣ ଆଫ୍ରିକା ମହାଦେଶର ଅନ୍ୟାନ୍ୟ ଅଞ୍ଚଳରୁ ବିଚ୍ଛିନ୍ନ ହୋଇ ଯାଉଛି । ଏହାକୁ ଗ୍ରେଟ୍ ରିଫଟ୍ ଭାଲି କୁହାଯାଏ । ପ୍ଲେଟ୍‌ଗୁଡ଼ିକ ପରସ୍ପରକୁ ଠେଲାପେଲା କରିବା ଫଳରେ ତିବ୍ବତୀୟ ମାଳଭୂମି ସୃଷ୍ଟି ହୋଇଛି । ସମୁଦ୍ର ମଧ୍ୟରେ ଦୁଇଟି ପ୍ଲେଟର ସଂଘର୍ଷ ହେଲେ, ସେଡିମେଣ୍ଟ ଶିଳାସବୁ ସମୁଦ୍ର ଶଯ୍ୟାରୁ ଉପରକୁ ଉଠି ପର୍ବତଶ୍ରେଣୀ ସୃଷ୍ଟି ହୁଏ ।

ଉଦାହରଣସ୍ୱରୂପ ଭାରତ-ଅଷ୍ଟ୍ରେଲିଆ ପ୍ଲେଟ୍, ଏସିଆ-ଇଉରୋପ ପ୍ଲେଟ୍ ବିପକ୍ଷରେ ଠେଲାପେଲା ହେବାରୁ, ହିମାଳୟ ପର୍ବତ ସୃଷ୍ଟି ହୋଇଛି । ଆମେରିକାର କାଲିଫର୍ଣ୍ଣିଆ ଉପକୂଳରେ ବାରମ୍ବାର ଭୂମିକମ୍ପ ହେବାର କାରଣ ହେଉଛି ଯେ ପର୍ବତ ଓ ଶିଳାମାନଙ୍କର ଚଳନ ଓ ସ୍ଖଳନ ହେଉଅଛି, ଯେତେବେଳେ ପ୍ଲେଟ୍‌ଗୁଡ଼ିକ ପରସ୍ପରକୁ ଠେଲାପେଲା କରୁଛନ୍ତି । ନୂଆ ପର୍ବତ ଓ ଶିଳା ସୃଷ୍ଟି ହେଉଛି ଓ ପୁରୁଣା ଉଭାନ ହେଉଛି ।

ଭୂପୃଷ୍ଠ ଓ ସମୁଦ୍ରର ପରିବର୍ତ୍ତନ ଜଳବାୟୁକୁ ମଧ୍ୟ ପ୍ରଭାବିତ କରେ । ସ୍ଥଳଭାଗ ଗରମ ହୁଏ ଏବଂ ଜଳଭାଗ ଅପେକ୍ଷା ଚଞ୍ଚଳ ଶୀତଳ ହୁଏ । ଏହା ଫଳରେ ବାୟୁମଣ୍ଡଳରେ ବାୟୁଚାପ ପ୍ରଭାବିତ ହୁଏ ଯାହା ଅବଶେଷରେ ପୃଥିବୀର ଜଳବାୟୁକୁ ପରିବର୍ତ୍ତନ କରେ । ଏବେ ଉତ୍ତରମେରୁ, ବରଫ ପାଲଟିଥିବା ସମୁଦ୍ର ତଳେ ଅଛି । ସମୁଦ୍ର ସ୍ରୋତ ବିଷୁବ ଅଞ୍ଚଳରୁ ଆମେରିକାର ପୂର୍ବ ଉପକୂଳକୁ ଉଷ୍ଣଜଳ ବୋହି ଆଣନ୍ତି । ତେଣୁ ଏହା ଉଷ୍ଣ ରହେ । ଆଣ୍ଟାର୍କଟିକା ମହାଦେଶ ଦକ୍ଷିଣ ମେରୁରେ ଅବସ୍ଥିତ ଓ ସମୁଦ୍ରଦ୍ୱାରା ବେଷ୍ଟିତ, ଯାହାଫଳରେ ଏହା ଅତ୍ୟନ୍ତ ଥଣ୍ଡା ରହେ । ଯେତେବେଳେ ପୃଥିବୀର ଜଳବାୟୁ ବଦଳେ ଏବଂ ମେରୁ ଅଞ୍ଚଳରେ ବରଫ ବିସ୍ତାରିତ ଓ ସଙ୍କୋଚିତ ହୁଏ ସେତେବେଳେ ସମୁଦ୍ରପତ୍ତନ୍ ତଳକୁ ଖସେ କିମ୍ବା ଉପରକୁ ଉଠେ । ସମୁଦ୍ର ପତ୍ତନ ତଳକୁ ଖସିଲେ, ମହାଦେଶମାନଙ୍କ ମଧ୍ୟରେ ଯଥା : ଉତ୍ତର ଓ ଦକ୍ଷିଣ ଆମେରିକା ମଧ୍ୟରେ ସ୍ଥଳସଂଯୋଗ ସୃଷ୍ଟି ହୁଏ । ଯେତେବେଳେ ସମୁଦ୍ର ପତ୍ତନ ଉପରକୁ ଉଠେ ସେତେବେଳେ ସ୍ଥଳସଂଯୋଗ ଉଭାନ ହୁଏ ଏବଂ ନୂଆ ନୂଆ ଦ୍ୱୀପମାନ ସୃଷ୍ଟି ହୁଏ । ବରଫଯୁଗରେ ଇଂଲାଣ୍ଡ ଦ୍ୱୀପ ଇଉରୋପ ସହିତ ସଂଯୁକ୍ତ ଥିଲା । କିନ୍ତୁ ବରଫ ତରଳିଲା ପରେ ଇଂଲିଶ୍ ଚ୍ୟାନେଲ ଓ ଆଇରିସ୍ ସମୁଦ୍ର ସୃଷ୍ଟି ହେଲା । ଜଳବାୟୁ ପରିବର୍ତ୍ତନର ଏକ କାରଣ ହେଲା ଯେ ସୂର୍ଯ୍ୟ ଚାରିପାଖେ, କକ୍ଷରେ ଘୂର୍ଣ୍ଣନ ବେଳେ ପୃଥିବୀ ଢଳି ପଡୁଛି । ପୃଥିବୀର ଜଳବାୟୁ ଏହିପରି ଭାବେ ନିୟୁତ ବର୍ଷ ଧରି ବଦଳୁଛି, ଯାହାର ପ୍ରମାଣ ଶିଳା ଓ ଫସିଲ ବା ଜୀବାଶ୍ମରୁ ମିଳେ ।

## ଭୂମିକମ୍ପ ଓ ଆଗ୍ନେୟଗିରି

ଅଧିକାଂଶ ଭୂମିକମ୍ପ ପୂର୍ବରୁ କୁହାଯାଇଥିବା ପ୍ଲେଟ୍ ସୀମାରେ ହୁଏ, ଯଦିଓ ବହୁସଂଖ୍ୟକ ଭୂମିକମ୍ପ ମହାଦେଶ—ପ୍ଲେଟ୍‌ର ମଧ୍ୟଭାଗରୁହିଁ ଜାତ ହୋଇଥାଏ । ଭୂମିକମ୍ପରେ ଶିଳା ଉପରେ ଚାପ ବଢ଼ିଉଠେ, କାରଣ ପ୍ଲେଟ୍ ଚଳନ ଫଳରେ ଗୋଟିଏ ପ୍ଲେଟ୍ ଅନ୍ୟ ପ୍ଲେଟ୍ ତଳେ ରହିଯାଏ କିମ୍ବା ତାକୁ ଅତିକ୍ରମ କରି

ଚାଲିଯାଏ । ଯେତେବେଳେ ଶିଳାର ବଳଠାରୁ ଚାପର ବଳ ବେଶୀ ହୁଏ, ସେତେବେଳେ ଶିଳା ଭଗ୍ନ ବା ଫ୍ରାକ୍‌ଚର ଘଟେ । ଏହି ବାଟ ଦେଇ ଶକ୍ତି ନିର୍ଗତ ହୁଏ ଯାହା ଭୂମିକମ୍ପ ସୃଷ୍ଟି କରେ । ସିସ୍‌ମୋଗ୍ରାଫ ନାମକ ଯନ୍ତ୍ରରେ ଭୂମିକମ୍ପର ଜନ୍ମସ୍ଥଳ ଓ ତାହାର ବଳ ବା ଶକ୍ତି ଜଣା ପଡ଼େ । ଭୂମିକମ୍ପଗୁଡ଼ିକ ସାଧାରଣତଃ ପର୍ବତଶ୍ରେଣୀ ଓ ଦ୍ୱୀପପୁଞ୍ଜମାନଙ୍କର ଗଡ଼ାଣିଆଁ ଅଞ୍ଚଳରେ ସଂଘଟିତ ହୁଏ । ପ୍ଲେଟ୍ ଟେକଟୋନିକ୍ସ ଭୂମିକମ୍ପର କାରଣ ।

ଆଗ୍ନେୟଗିରିରେ ଗୋଟିଏ ରନ୍ଧ୍ର ଦେଇ ତରଳ ଲାଭା ଓ ଗ୍ୟାସ୍‌ର ଉଦ୍‌ଗୀରଣ ହୁଏ । ଅନେକ ସମୟରେ ଏହା ସହ ବିସ୍ଫୋରଣ ଘଟେ । ଅଧିକାଂଶ ଆଗ୍ନେୟଗିରି ଗୋଟିଏ ରେଖାରେ ଦେଖାଯାଆନ୍ତି, ଯାହାକି ପ୍ଲେଟମାନଙ୍କର ସୀମାରେ ସଂଘଟିତ ହୁଏ । କେତେକ ଆଗ୍ନେୟଗିରି ପ୍ଲେଟମାନଙ୍କ ମଧ୍ୟସ୍ଥଳରେ ମଧ୍ୟ ହୋଇଥାଏ । ପୃଥିବୀର ଅଧିକାଂଶ ଆଗ୍ନେୟଗିରି ପ୍ରଶାନ୍ତ ମହାସାଗର କୂଳରେ ଏବଂ ଭୂମଧ୍ୟସାଗରରୁ ଇଣ୍ଡୋନେସିଆ ଅଞ୍ଚଳରେ ଦେଖାଯାଏ ।

## ଫସିଲ ବା ଜୀବାଶ୍ମ

ଯେଉଁ ଉଦ୍ଭିଦ ଓ ଜନ୍ତୁମାନେ ବହୁବର୍ଷ ପୂର୍ବେ ବାସ କରୁଥିଲେ, ସେମାନଙ୍କ ଶରୀରର ଅବଶେଷାଂଶକୁ ଫସିଲ ବା ଜୀବାଶ୍ମ କୁହାଯାଏ । ଫସିଲରୁ ଶିଳାମାନ କେଉଁ ପରିବେଶରେ ଗଠିତ ହେଲେ, ତାହା ଜଣାପଡ଼େ । ଫସିଲରୁ ପୁରାତନ ଜଳବାୟୁ ବିଷୟ ଜଣାପଡ଼େ । ଫସିଲରୁ ଜୀବମାନେ ବର୍ଷ ବର୍ଷ ଧରି କିପରି ପରିବର୍ତ୍ତନ ହେଉଛନ୍ତି ତାହା ଜଣାପଡ଼େ । ଏହି ପରିବର୍ତ୍ତନ, ବିବର୍ତ୍ତନ ବା ଇଭୋଲ୍ୟୁସନ ଯୋଗୁଁ ହୋଇଥାଏ । ଫସିଲରୁ ଶିଳା ବା ପାହାଡ଼ର ବୟସ ଜଣାପଡ଼େ । କୋଇଲାଖଣିରେ ଫସିଲଗୁଡ଼ିକ ଭଲ ଅବସ୍ଥାରେ ଥାଏ । ବୃହତ୍‌କାୟ ଜନ୍ତୁ ଡିନୋସରମାନଙ୍କର ଫସିଲ ପଦଚିହ୍ନରୁ ସେମାନେ କିପରି ଚଳପ୍ରଚଳ ହେଉଥିଲେ ତାହା ଜଣାପଡ଼ିଛି । ଡିନୋସରମାନଙ୍କର ଲାଞ୍ଜ ଥିଲା ଏବଂ କେତେକ ଡିନୋସର ଆମିଷାଶୀ ଓ କେତେକ ନିରାମିଷାଶୀ ଥିଲେ ବୋଲି ଫସିଲରୁ ଜଣାପଡ଼ିଛି । ପଥର ମଧ୍ୟରେ ଫସିଲ ମିଳିଛି । କିନ୍ତୁ ଫସିଲ ମୁଖ୍ୟତଃ ସେଡିମେଣ୍ଟାରୀ ଶିଳାରୁ ମିଳିଥାଏ– ଚୂନପଥର, ଚକ୍, ବାଲିପଥର, ବାଦୁଅପଥର । ଫସିଲର ଅଧ୍ୟୟନକୁ ଇଂରାଜୀରେ 'ପାଲିଓଣ୍ଟଲଜି' କୁହାଯାଏ ।

ଅନେକ ଉଦ୍ଭିଦ ଓ ଜନ୍ତୁ ଅଛନ୍ତି, ଯେଉଁମାନେ ନିୟୁତ ବର୍ଷ ପୂର୍ବେ ବଞ୍ଚିଥିବା ଉଦ୍ଭିଦ ଓ ଜନ୍ତୁମାନଙ୍କର ସାଦୃଶ୍ୟ ରଖିଛନ୍ତି ଏବଂ ବିଶେଷ ବଦଳି ନାହାନ୍ତି । ଏଥି ମଧ୍ୟରୁ କୋଏଲା କନ୍ଥ ମାଛ ପ୍ରଧାନ । ୪୦୦ ନିୟୁତ ବର୍ଷ ପୂର୍ବେ ଏମାନେ ସମୁଦ୍ରରେ ପ୍ରଚୁର ପରିମାଣରେ ଦେଖା ଦେଇଥିଲେ । ସେହିପରି ଡିନୋସରମାନଙ୍କ ସମୟରେ ପୃଥିବୀର ରେଡ୍ ଉଡ୍ ଗଛ ରହିଛି । ଏହି ଗଛ ଜୀଇଁକରି ଏବେ ମଧ୍ୟ ଚୀନ୍ ଦେଶରେ ରହିଛି । ଗଭୀର ସମୁଦ୍ର ଶଯ୍ୟାରେ ସେଫାଲୋ ଡିସକସ୍ ଜନ୍ତୁର ଫସିଲ ମିଳିଛି ଯାହା ୫୦୦ ନିୟୁତ ବର୍ଷ ପୂର୍ବେ ବଞ୍ଚିଥିଲା । ରାଜାକଙ୍କଡ଼ା ବା ହର୍ସ-ସୁ ନିୟୁତ ବର୍ଷ ଧରି ବଞ୍ଚି ରହି ଆସିଅଛି ।

ଶିଳା ଓ ଫସିଲରୁ ପୃଥିବୀର ଇତିହାସ, ଜଳବାୟୁ ପରିବର୍ତ୍ତନ, ମହାଦେଶମାନଙ୍କର ଚଳନ, ବାୟୁମଣ୍ଡଳର ଗଠନ, ପର୍ବତଶ୍ରେଣୀ ଓ ସମୁଦ୍ରର ଗଠନ ଓ ସର୍ବୋପରି ଜୀବଜଗତର ଅଭ୍ୟୁତ୍ଥାନ ବିଷୟ ଜଣାପଡ଼େ ।

ଧୀରେ ଧୀରେ ପରିବର୍ତ୍ତନ ଫଳରେ ନୂଆ ନୂଆ ପ୍ରକାରର ଉଦ୍ଭିଦ ଓ ଜୀବଜନ୍ତୁମାନେ ଜନ୍ମଗ୍ରହଣ କରିଛନ୍ତି । ଏହାକୁ ବିବର୍ତ୍ତନ ବା ଇଭୋଲ୍ୟୁସନ କୁହାଯାଏ । ଆମେ ଯେତେବେଳେ ବିବର୍ତ୍ତନ କଥା କହୁଁ, ସେତେବେଳେ ଉଦ୍ଭିଦ ଓ ଜୀବଜନ୍ତୁଙ୍କ ଜାତି (ସ୍ପିସିସ୍) କଥା କହୁଁ । ଏବେ ପୃଥିବୀରେ ଦେଢ଼ ନିୟୁତ ଜାତି ଅଛନ୍ତି । ଏହା ମଧ୍ୟରୁ ଅନେକ ଜାତି କେତେ ସହସ୍ର ବା କେତେ ନିୟୁତ ବର୍ଷ ଧରି ବଞ୍ଚିଛନ୍ତି । କେତେ ବର୍ଷ ଗୋଟିଏ ଜାତିର ପ୍ରାଣୀ (ସ୍ପିସିସ୍) ବଞ୍ଚିବ, ତାହା କେତେ ଚଞ୍ଚଳ ବିବର୍ତ୍ତିତ ହେଉଛି ଓ ଅନ୍ୟ ଜାତିର ପ୍ରାଣୀ ସହ ଖାଦ୍ୟ ଓ ଆଶ୍ରୟପାଇଁ କେତେ ପ୍ରତିଯୋଗିତା କରୁଛି, ତାହା ଉପରେ ନିର୍ଭର କରେ । ମସେଲ ଜାତୀୟ ପ୍ରାଣୀ ୫୦ ନିୟୁତ ବର୍ଷ ବଞ୍ଚେ, କିନ୍ତୁ ସ୍ତନ୍ୟପାୟୀ ପ୍ରାଣୀ ବଂଶ ପ୍ରାୟ ପାଞ୍ଚନିୟୁତ ବର୍ଷ ବଞ୍ଚେ । ଫସିଲ ରେକର୍ଡରୁ ଜଣାପଡ଼େ ଯେ ପୁରୁଣା ଜାତି ଜୀବର ମୃତ୍ୟୁ ହେଉଛି ଏବଂ ନୂଆ ଜାତିର ପ୍ରାଣୀ ଜନ୍ମ ହେଉଛନ୍ତି । ଅନେକ ସମୟରେ ବିଭିନ୍ନ ଫସିଲ ଆବିଷ୍କାର ସମୟ ମଧ୍ୟରେ ବ୍ୟବଧାନ ଦେଖାଯାଏ ।

## ଜୀବନର ବିବର୍ତ୍ତନ

୫୭୦ ନିୟୁତ ବର୍ଷ ପୂର୍ବେ ପ୍ରଥମେ କାମ୍ବ୍ରିଆନ ନାମକ ସମୟରେ ପୃଥିବୀରେ ଜୀବଜଗତ ହଠାତ୍ ଦେଖାଗଲା । ବିଭିନ୍ନ ଜୀବଜନ୍ତୁର ଜାତି ବିଭିନ୍ନ ସମୟରେ ଜନ୍ମଲାଭ କରିଛନ୍ତି ବା ବିଲୋପ ପାଇଛନ୍ତି । ନିୟୁତ ବର୍ଷ ଧରି ବିଭିନ୍ନ ଜୀବଜନ୍ତୁମାନଙ୍କର

ଯେଉଁ ପରିବର୍ତ୍ତନ ଦେଖାଦେଇଛି, ତାକୁ ବିବର୍ତ୍ତନ ବା ଇଭୋଲ୍ୟୁସନ କହନ୍ତି । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଦୁଇଜଣ ବୈଜ୍ଞାନିକ ଚାର୍ଲସ୍ ଡାରଉଇନ୍ (୧୮୦୯ରୁ ୧୮୮୨) ଓ ଆଲଫ୍ରେଡ୍ ରସେଲ ଓ୍ୱାଲେସ୍ ବିବର୍ତ୍ତନବାଦ ବା ତତ୍ତ୍ୱ ପ୍ରଚାର କଲେ, ଯାହା ପୁରୁଣା ଜାତିର ଜୀବଜନ୍ତୁମାନଙ୍କରୁ ନୂଆ ଜାତିର ଜୀବଜନ୍ତୁ କିପରି ଉତ୍ପତ୍ତି ହେଲା, ତାହା ବୁଝାଇ ପାରିଲା । ଚାର୍ଲସ ଡାରଉଇନ୍ ଅରିଜିନ ଅଫ୍ 'ସ୍ପେସିସ୍' (ବା ଜୀବଜନ୍ତୁ ଜାତିମାନଙ୍କର ଉତ୍ପତ୍ତି) ନାମକ ଏକ ପୁସ୍ତକ ରଚନା କରିଥିଲେ । ଏଥିରେ ସେ ବିବର୍ତ୍ତନ ଫଳରେ ପୃଥିବୀରେ କିପରି ପଶୁ, ପକ୍ଷୀ, ମଣିଷ ଇତ୍ୟାଦିର ସୃଷ୍ଟି ହୋଇଛି ତାହା ବୁଝାଇଛନ୍ତି । ବିବର୍ତ୍ତନ ପ୍ରାକୃତିକ ବଛାବଛି ପ୍ରକ୍ରିୟା ବା ନେଚୁରାଲ ସିଲେକ୍ସନ ଯୋଗୁଁ ହେଉଛି ବୋଲି ସେ ପ୍ରମାଣିତ କରିଥିଲେ, ଯାହା ଫଳରେ ନୂଆ ଜାତିର ପଶୁପକ୍ଷୀ ସୃଷ୍ଟି ହେଉଛି ବୋଲି ସେ ଦର୍ଶାଇଥିଲେ । ଏହି ପ୍ରକ୍ରିୟା ତାଙ୍କ ମତରେ ପାର୍ଥକ୍ୟର ପରିବର୍ତ୍ତନ, ବଂଶଗତ ଗୁଣରକ୍ଷା ଏବଂ ବଞ୍ଚିବା ପାଇଁ ପ୍ରତିଯୋଗିତା ଯୋଗୁଁ ହେଉଛି ବୋଲି ସେ କହିଥିଲେ ।

ଯେତେବେଳେ କେତେକ ବଂଶର ଉଦ୍ଭିଦ ବା ଜୀବଜନ୍ତୁ ଖାଦ୍ୟାଭାବ ଯୋଗୁଁ କିମ୍ବା ସଂଖ୍ୟାଧିକ୍ୟ କାରଣରୁ ଆଶ୍ରୟସ୍ଥଳ ଅଭାବ ଯୋଗୁଁ କିମ୍ବା ଶତ୍ରୁର ଦୌରାତ୍ମ୍ୟରୁ ରକ୍ଷା ପାଇବାରେ ବଞ୍ଚି ରହନ୍ତି, ସେମାନେ ନୂତନ ବଂଶ ସୃଷ୍ଟି କରନ୍ତି । ଏମାନଙ୍କୁ ଅତି ସଫଳଜୀବ କୁହାଯାଏ । ଏମାନେ ସ୍ଥାନୀୟ ପରିବେଶକୁ ଆଦରି ନିଅନ୍ତି । ଏମାନଙ୍କର କେତେଗୁଡ଼ିଏ ଉତ୍ତରାଧିକାରୀ ବା ବଂଶଗୁଣ ଅଛି, ଯାହା ସେମାନଙ୍କୁ ଅନ୍ୟମାନଙ୍କ ତୁଳନାରେ ସଫଳ କରାଏ । ଏହିମାନଙ୍କରହିଁ ବଂଶ ବୃଦ୍ଧି ହୁଏ । ଯେଉଁ ପ୍ରକ୍ରିୟା ଯୋଗୁଁ ଏହି ବିବର୍ତ୍ତନ ହୁଏ ତାକୁ ନେଚୁରାଲ ସିଲେକ୍ସନ (ପ୍ରାକୃତିକ ବଛାବଛି ପ୍ରଣାଳୀ) କହନ୍ତି । ପୃଥିବୀ ଓ ତା'ର ଜଳବାୟୁର ପରିବର୍ତ୍ତନ ଅନୁସାରେ ନିୟୁତ ବର୍ଷ ଧରି ବିଭିନ୍ନ ଜୀବଜନ୍ତୁମାନଙ୍କର ଜାତିର ଉତ୍ପତ୍ତି ଓ ବିଲୀନତା ହୋଇଛି । ମହାଦେଶମାନଙ୍କରେ ନିୟୁତ ବର୍ଷ ଧରି ଉଦ୍ଭିଦ ଓ ଜୀବଜନ୍ତୁମାନେ ନିଜ ବାଟେ ବିବର୍ତ୍ତନ ହୋଇଛନ୍ତି ଯଦିଓ ଏକଦା ସେସବୁ ଏକ ସୁପର ମହାଦେଶ ଥିଲା ଓ ପରେ ବିଚ୍ଛିନ୍ନ ହେଲା । ତେଣୁ ଅଷ୍ଟ୍ରେଲିଆରେ ଏମୁ ଓ କଙ୍ଗାରୁ ଦେଖାଯାଏ, ଯାହା ଅନ୍ୟ କୌଣସି ମହାଦେଶରେ ଦେଖାଯାଏ ନାହିଁ ।

**ଯେତେବେଳେ ନୂଆ ଓ ଦକ୍ଷ ଜୀବଜନ୍ତୁ ଜନ୍ମ ହୁଅନ୍ତି, ସେତେବେଳେ ପୁରୁଣା ଜାତିର ଜୀବଜନ୍ତୁ ଏମାନଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିପାରନ୍ତି ନାହିଁ ଓ ଫଳରେ ନିଶ୍ଚିହ୍ନ ହୋଇ ଯାଆନ୍ତି । ଉଦାହରଣସ୍ୱରୂପ ସମୁଦ୍ରରେ ପ୍ରଥମେ ଟ୍ରିଲୋବାଇଟ୍**



ଟ୍ରିଲୋବାଇଟ୍

ପ୍ରାଣୀ ଥିଲେ । ତା'ପରେ ନଟିଲୋଏଡ ପ୍ରାଣୀଙ୍କର ଆବିର୍ଭାବ ହେଲା, ଯେଉଁମାନେ ସନ୍ତରଣକାରୀ ଥିଲେ । ତା'ପରେ ସଫଳକାମ ପ୍ରାଣୀ ଏମୋନୋଏଡମାନେ ଆସିଲେ । ପରେ ସେମାନଙ୍କର ବିଲୋପ ହେଲା ଏବଂ ମାଛଜାତିର ଆବିର୍ଭାବ ହେଲା । ମାଛମାନଙ୍କର ହଜାର ହଜାର ଅଲଗା ଜାତି ଅଛି । ଜୀବଜନ୍ତୁ ଜାତିମାନଙ୍କର ବିଲୋପର କାରଣ କ'ଣ ? ଉଦାହାରଣସ୍ୱରୂପ ୨୫୦ ନିୟୁତ ବର୍ଷ ପୂର୍ବେ ପର୍ମିୟାନ ନାମକ ସମୟ ଶେଷରେ ପୃଥିବୀର ୭୬ରୁ ୯୬ ଭାଗ ଜାତିର ଜୀବ ନିଶ୍ଚିହ୍ନ ହୋଇଗଲେ । ସେହିପରି ୬୫ ନିୟୁତ ବର୍ଷ ପୂବେ କ୍ରେଟାସିୟସ୍ ସମୟରେ ଡିନୋସରମାନେ ନିଶ୍ଚିହ୍ନ ହୋଇଗଲେ । ଜୀବଜନ୍ତୁଙ୍କର ସମ୍ପୂର୍ଣ୍ଣ ନିଶ୍ଚିହ୍ନତାର କାରଣ ରହସ୍ୟମୟ । କେହି କେହି କହନ୍ତି ପୃଥିବୀର ଜଳବାୟୁ ପରିବର୍ତ୍ତନ ଯୋଗୁଁ ଏହା ହୋଇଛି । କେହି କେହି କହନ୍ତି ମହାଦେଶମାନଙ୍କର ଚଳନଗତି ଯୋଗୁଁ ଏହା ହୋଇଛନ୍ତି । କେହି ଅବା କହନ୍ତି ଉଦ୍ଭିଦ ଓ ଜୀବଜନ୍ତୁମାନେ ନୂତନ ପରିବେଶ ସହ ଖାପ୍ ଖୁଆଇ ପାରିଲେ ନାହିଁ । ତେବେ ଏକଥା ସତ୍ୟ ଯେ ପୁରାତନ ଜୀବଜନ୍ତୁଙ୍କର ବିଲୋପ ପରେ ନୂଆ ବିବର୍ତ୍ତନ ହୋଇଛି, ଯେଉଁଥିରେ ନୂତନ ପ୍ରକାରର ଜୀବଜନ୍ତୁମାନେ ଜନ୍ମଗ୍ରହଣ କରିଛନ୍ତି ।

ପୃଥିବୀରେ ପ୍ରଥମେ କିପରି ଜୀବନ ସୃଷ୍ଟି ହେଲା, ତାହା କୌତୂହଳପ୍ରଦ । ପୃଥିବୀରେ ବାୟୁମଣ୍ଡଳରେ ବିଭିନ୍ନ ଗ୍ୟାସ୍ ଥିଲା ଓ ଜଳୀୟବାଷ୍ପ ଥିଲା ଏବଂ ବିଜୁଳିପାତ ଯୋଗୁଁ ନୂତନ ରାସାୟନିକ ପଦାର୍ଥମାନ ସୃଷ୍ଟି ହେଲା, ଯାହା ଜୀବରେ ଦେଖାଯାଏ । ୧୯୫୦ରେ ଆମେରିକୀୟ ବୈଜ୍ଞାନିକ ଷ୍ଟାନଲେ ମିଲର ତାଙ୍କ ପରୀକ୍ଷାଗାରରେ ପରୀକ୍ଷାମାନ କରିଥିଲେ । ସେ ମିଥେନ୍, ଏମୋନିଆ, ଉଦଜାନ ଏବଂ ଜଳୀୟବାଷ୍ପ ରଖି (ଯାହା ପୃଥିବୀର ପ୍ରଥମ ଅବସ୍ଥାରେ ଥିଲା) ତା' ମଧ୍ୟ ଦେଇ ବିଦ୍ୟୁତ୍ ଶକ୍ତି ପ୍ରବାହ କଲେ । ପରୀକ୍ଷା ଶେଷରେ ଦେଖାଗଲା ଯେ ଯାହା ପ୍ରସ୍ତୁତ ହେଲା, ତାହା ଜୀବନ୍ତ ପଦାର୍ଥରେ ଦେଖାଯାଏ ଅର୍ଥାତ୍ ଏମିନୋ ଏସିଡ୍ । ସମସ୍ତ ଜୀବନ୍ତ ପଦାର୍ଥର କୋଷ ବା ସେଲ ଅଛି । ଏକକୋଷରୁ ବହୁକୋଷୀ ଜୀବ ଦେଖାଯାଆନ୍ତି । କେବେ ଜୀବନ୍ତ ପଦାର୍ଥରେ କୋଷ ବା ସେଲ୍ ସୃଷ୍ଟି ହେଲା ତାହା ଜଣାଯାଇ ନାହିଁ । ଇଂରାଜୀ ବୈଜ୍ଞାନିକ ରବର୍ଟ ହୁକ୍ ୧୬୬୫ ମସିହାରେ ଲେନ୍ସ ଦ୍ୱାରା ଗୋଟିଏ ଗଛର ବଲ୍‌କଳ ପରୀକ୍ଷା କରୁଥିଲେ । ସେଥିରେ ସେ ମହୁଫେଣାପରି ଅତି କ୍ଷୁଦ୍ର କୋଠରିଗୁଡ଼ିଏ ଦେଖିବାକୁ ପାଇଲେ । ଏହି ପ୍ରତ୍ୟେକ କୋଠରିକୁ ସେ କୋଷ ବା ସେଲ୍ ଭାବରେ ନାମିତ କଲେ । ପରେ ସବୁ ପ୍ରାଣୀ ଓ ଉଦ୍ଭିଦର ଶରୀର ଏହିପରି କୋଷରେ ତିଆରି ହୋଇଥିବାର ପ୍ରମାଣିତ ହେଲା । କିନ୍ତୁ ରବର୍ଟ ହୁକ୍ ଦେଖିଥିବା କୋଷଗୁଡ଼ିକ




ଉଦ୍ଭିଦ କୋଷର
ବିଭିନ୍ନ ଅଂଶ

(ବଲ୍‌କଲ) ମୃତ ହୋଇଥିବାରୁ ଶୂନ୍ୟ କୋଠରି ବିଶିଷ୍ଟ ଥିଲା । ପରେ ଜୀବନ୍ତ କୋଷକୁ ପରୀକ୍ଷା କରି ତାହା ମୁଖ୍ୟତଃ ଏକ ଅର୍ଦ୍ଧତରଳ ପଦାର୍ଥରେ ଭରି ରହିଥିବାର ଦେଖାଗଲା । ଏହା କୋଷର ସମସ୍ତ ପ୍ରକାର ଜୀବନ ପ୍ରକ୍ରିୟା ସମ୍ପାଦନ




• ପ୍ରାଣୀ କୋଷର ବିଭିନ୍ନ ଅଂଶ •

କରିଥାଏ । ଉଦ୍ଭିଦ ହେଉ ବା ପ୍ରାଣୀ ହେଉ, ପ୍ରତ୍ୟେକ ଜୀବର ଶରୀର ଏକ ବା ଏକାଧିକ କୋଷଦ୍ୱାରା ଗଠିତ ହୋଇଥାଏ । ଜୀବର ଶରୀର ଏକକୋଷ ବିଶିଷ୍ଟ ହେଲେ, ତାକୁ ଏକକୋଷୀ ଜୀବ ଏବଂ ଏକାଧିକ କୋଷଦ୍ୱାରା ଗଠିତ ହୋଇଥିଲେ, ତାକୁ ବହୁକୋଷୀ ଜୀବ କୁହାଯାଏ । ଜୀବକୋଷ କେବଳ ଯେ ଶରୀର ଗଠନର ମୌଳିକ ଅଂଶ ତାହା ନୁହେଁ, ଏହା ସମଗ୍ର ଜୀବର ପ୍ରାଣକେନ୍ଦ୍ର । ସମସ୍ତ ବୀଜାଣୁ (ବେକ୍ଟେରିଆ), ନୀଳହରିତ୍ ଶୈବାଳ ଓ ଆଦିପ୍ରାଣୀ କେବଳ ଗୋଟିଏ ଗୋଟିଏ କୋଷକୁ ନେଇ ଗଠିତ ହୋଇଥିବାବେଳେ, ଉଚ୍ଚଶ୍ରେଣୀର ଉଦ୍ଭିଦ ଓ ବହୁ ପ୍ରାଣୀ ତଥା ମନୁଷ୍ୟର ଶରୀର ଅନେକ କୋଷର ସମାରୋହରେ ଗଠିତ । ପୁଣି ପୃଥିବୀରେ ପ୍ରଥମେ ମେରୁଦଣ୍ଡବିହୀନ ଜୀବ ଦେଖାଦେଲେ । ପରେ ଏମାନଙ୍କର ମେରୁଦଣ୍ଡ ହେଲା ।

ଗ୍ରେଗର ମେଣ୍ଡେଲ (୧୮୨୨—୧୮୮୪) ଆବିଷ୍କାର କରିଥିଲେ ଯେ ଭିନ୍

ଜାତୀୟ ପଦାର୍ଥ ଯୋଗୁଁ ବଂଶଗତ ପ୍ରକୃତି ରହୁଛି । ଏହାକୁ ଇଂରାଜୀରେ ହେରିଡିଟି କହନ୍ତି । ୧୯୨୦ରେ ପ୍ରମାଣିତ ହେଲା ଯେ, କ୍ରମୋସମ୍ (ଗୁଣସୂତ୍ର) ବସ୍ତୁରେ ଜିନ୍‌ମାନେ ଅନ୍ତର୍ନିହିତ ଅଛନ୍ତି । କ୍ରମୋସମ୍‌ରେ ଡିଅକ୍ସିରିବୋନିଉକ୍ଲିକ୍ ଏସିଡ୍ (ଡି.ଏନ୍.ଏ.) ଅଛି ଯେଉଁଥିଯୋଗୁଁ ବଂଶଧରମାନଙ୍କରେ ଅବିକଳ ଜୀବନ ଗଠନ ହେଉଛି । ପ୍ରତି ପ୍ରକାର ଜୀବର ଅଲଗା ଅଲଗା ଡି.ଏନ୍.ଏ. ଅଛି । ଆଉ ଗୋଟିଏ ପଦାର୍ଥ ରିବୋନିଉକ୍ଲିକ ଏସିଡ୍ (ଆର୍.ଏନ୍.ଏ.) ପ୍ରୋଟିନ୍ ପ୍ରସ୍ତୁତ କରେ ।

ପୃଥିବୀର ଇତିହାସ ଭୂତାତ୍ତ୍ୱିକ ସମୟ ଅନୁସାରେ ଭାଗ କରାଯାଇଛି । ଜଳବାୟୁ ଓ ଫସିଲର ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନକୁ ଆଖିରେ ରଖି ଏହା କରାଯାଇଛି । ପୃଥିବୀର ଇତିହାସକୁ ପାଞ୍ଚୋଟି ଯୁଗରେ ବିଭକ୍ତ କରାଯାଇଛି । ସବୁଠାରୁ ପୁରୁଣା ଯୁଗ ହେଲା 'ଆର୍କିୟାନ', ଯେଉଁ ସମୟରେ ପ୍ରଥମେ ସଂସାରରେ ଜୀବନ ଦେଖାଗଲା । 'ପ୍ରୋଟାଜୋଇକ୍' ଯୁଗରେ କଠିନ ଖୋଳ ଥିବା ଫସିଲ ଦେଖା ଦେଇ ନ ଥିଲା । ତା'ପରେ ଆସିଲା 'ପାଲିଓଜୋଇକ୍' ସମୟ ଯେତେବେଳେ ଖୋଳ ଥିବା ଜୀବଙ୍କର ଆବିର୍ଭାବ ହେଲା । 'ପର୍ମିଆୟାନ' ଯୁଗରେ ଜୀବଜଗତର ସମୂହ ବିଲୋପ ହେଲା । 'ମେସୋଜୋଇକ୍' ଯୁଗରେ ପୁଣି ନୂଆ ଜୀବଜନ୍ତୁ ବିବର୍ତ୍ତନ ହୋଇ ଆବିର୍ଭାବ ହେଲା । 'କ୍ରେଟାସିୟସ' ଯୁଗରେ ଡିନୋସରମାନଙ୍କର ବହୁଳ ମୃତ୍ୟୁ ହେଲା । 'ସେନୋଜୋଇକ' ଯୁଗ ଏପର୍ଯ୍ୟନ୍ତ ଚାଲିଛି ।

# ପୃଥିବୀରେ ଜୀବନର ଇତିହାସ

ଗୋଟିଏ ହେକ୍ଟର ଜଙ୍ଗଲରେ ଚାଳିଶ ହଜାର ରକମର ବିଭିନ୍ନ କୀଟପତଙ୍ଗ ଦେଖାଯାଆନ୍ତି । ଦେଢ଼ ବିଲିୟନ (ନିୟୁତ ନିୟୁତ) ବର୍ଷ ପୂର୍ବେ ପୃଥିବୀରେ ପ୍ରଥମେ ସରଳ ଜୀବନ ସୃଷ୍ଟି ହେଲା । ଏହାର ଦୁଇ ବିଲିୟନ ବର୍ଷ ପରେ ଏଗୁଡ଼ିକ ବାୟୁମଣ୍ଡଳକୁ ବଦଳାଇଲେ । ଅମ୍ଳଜାନ ଗ୍ୟାସ୍‌ର ବହୁଳତା ହେଲା । ପୃଥିବୀରେ ଅଧିକା ଜଟିଳ ଶ୍ରେଣୀର ଜୀବନ ଦେଖାଗଲା । ଏହା ପରେ ନୂଆ ନୂଆ ଜୀବଜଗତ ଓ ଉଦ୍ଭିଦଜଗତ ସୃଷ୍ଟି ହେଲା । ଏଥିରୁ ପୁଣି ଅଧିକାଂଶଙ୍କର ବିଲୋପ ହେଲା । ଏହି ବିବର୍ତ୍ତନ ବର୍ତ୍ତମାନ ବି ପୃଥିବୀରେ ଚାଲିଛି । ପୃଥିବୀରେ ଏହି ଜୀବନର ଇତିହାସ ବିଷୟରେ ଅଧିକ ବିବରଣୀ ପରବର୍ତ୍ତୀ ପୃଷ୍ଠାମାନଙ୍କରେ ଦିଆଯାଇଛି । ସୁବିଧା ପାଇଁ ପରିଶିଷ୍ଟରେ ଏହାର ଏକ ସାରାଂଶ ଦିଆଯାଇଛି ।

# ପ୍ରିକାମ୍ବ୍ରିୟାନ ଯୁଗ

(ପୃଥିବୀର ଜନ୍ମଠାରୁ ୫୭୦ ନିୟୁତ ବର୍ଷ ପୂର୍ବ ପର୍ଯ୍ୟନ୍ତ)

ଏହା ପୃଥିବୀର ସୃଷ୍ଟି ହେବାଠାରୁ ୫୭୦ ନିୟୁତ ବର୍ଷ ଯାଏ ପରିବ୍ୟାପ୍ତ । ୫୭୦ ନିୟୁତ ବର୍ଷ ତଳେ ବହୁକୋଷୀ ବିଶିଷ୍ଟ ଜୀବ ଆବିର୍ଭାବ ହୋଇଥିଲେ । କିନ୍ତୁ ଆମେ ପାଇଥିବା ଶିଳା ମାତ୍ର ୩.୯ ନିୟୁତ ବର୍ଷ ତଳର । ତେଣୁ ପ୍ରାଚୀନତମ ଜୀବନ ବିଷୟରେ ଆମ ପାଖରେ ତଥ୍ୟ ନାହିଁ । ତଥାପି ଏକଥା ସତ୍ୟ ଯେ ପୃଥିବୀର ବାୟୁମଣ୍ଡଳରେ ପ୍ରଥମେ ଅମ୍ଳଜାନ ଗ୍ୟାସ୍ ନ ଥିଲା । ବାୟୁମଣ୍ଡଳରେ ବିଷାକ୍ତ ମିଥେନ୍, ଏମୋନିଆ, ଅଙ୍ଗାରକାମ୍ଳ ଗ୍ୟାସ୍ ଓ ଜଳୀୟବାଷ୍ପ ଥିଲା । ଜୀବର କୋଷ ପ୍ରୋଟିନ ଦ୍ୱାରା ଗଠିତ । ପ୍ରୋଟିନ୍ ମୌଳିକ ପଦାର୍ଥ ଏମିନୋ ଏସିଡ୍‌ର ସମ୍ମିଶ୍ରଣରେ ତିଆରି । କୋଷର ଅଭିବୃଦ୍ଧି ଡି.ଏନ୍.ଏ. ରାସାୟନିକ କୋଡ୍ ଯୋଗୁଁ ହୁଏ । ଡି.ଏନ୍.ଏ. ଯୋଗୁଁ ନୂଆ କୋଷ ଅବିକଳ ପୁରୁଣା କୋଷପରି ଗଠିତ ହୁଏ । ପ୍ରାଚୀନତମ କୋଷଗୁଡ଼ିକ ବର୍ତ୍ତମାନର ବୀଜାଣୁ ବା ବେକ୍‌ଟରିଆ ପରି ଥିଲେ । ଏହି ଜୀବକୋଷଗୁଡ଼ିକ କାର୍‌ବନ ବା ଅଙ୍ଗାର,

ମିଥେନ ଓ ଅଙ୍ଗାରକାମ୍ଳ ଗ୍ୟାସ୍‌ରୁ ପାଇଥିଲେ । ବାୟୁମଣ୍ଡଳରୁ ଉଦଜାନ ପାଇଥିଲେ । ଏହା ଫଳରେ କୋଷଗୁଡ଼ିକ ନୂଆ ଜୀବନ ଓ ଜୀବ ସୃଷ୍ଟି କଲେ । ଉଦ୍ଭିଦଗୁଡ଼ିକର କୋଷ, ସୂର୍ଯ୍ୟକିରଣ ନେଇ ଓ ଜଳ ଓ ଅଙ୍ଗାରକାମ୍ଳ ଗ୍ୟାସ୍ ବ୍ୟବହାର କରି ସୂର୍ଯ୍ୟ ଆଲୋକ ବିଶ୍ଳେଷଣ ବଳରେ ନିଜର ଖାଦ୍ୟପଦାର୍ଥ ପ୍ରସ୍ତୁତ କଲେ ଓ ବାୟୁମଣ୍ଡଳକୁ ଅମ୍ଳଜାନ ଗ୍ୟାସ୍ ଛାଡ଼ିଲେ । ଉଦ୍ଭିଦର ପତ୍ରରେ ପିଗମେଣ୍ଟ ବା ରଙ୍ଗିନ ପଦାର୍ଥ ବିଶେଷତଃ କ୍ଲୋରୋଫିଲ୍ ଥାଏ, ଯାହା ସୂର୍ଯ୍ୟକିରଣକୁ ବାନ୍ଧି ରଖେ । ଏହିପରି ଭାବରେ ନୀଳ-ସବୁଜ ଶୈବାଳ ବା ଆଲଗେର ସୃଷ୍ଟି । ପ୍ରଥମରୁ ଜୀବନ୍ତ ପଦାର୍ଥଗୁଡ଼ିକ ବିନା ଅମ୍ଳଜାନରେ ବଞ୍ଚିଥିଲେ । କିନ୍ତୁ ପୃଥିବୀର ବାୟୁମଣ୍ଡଳରେ ଅମ୍ଳଜାନ ଗ୍ୟାସ୍ ବୃଦ୍ଧି ପାଇବାରୁ ଅନେକ ଜାତୀୟ ଜୀବର ବିଲୋପ ଘଟିଥିଲା । ପ୍ରିକାମ୍ବ୍ରିୟାନ ଯୁଗର ଶେଷ ଭାଗରେ ବହୁ ଜାତୀୟ ଜୀବଙ୍କର ବିଲୋପ ହୋଇ ନୂଆ ବହୁକୋଷୀ ଜୀବମାନଙ୍କର ସୃଷ୍ଟି ହୋଇଛି । ଏଥିରୁ ସ୍ଲାଇମ ମୋଲଡ୍ ପ୍ରଧାନ ।

# କାମ୍ବ୍ରିୟାନ ସମୟ

(୫୭୦ ନିୟୁତରୁ ୫୦୦ ନିୟୁତ ବର୍ଷ ପୂର୍ବେ)

ଏହି ସମୟରେ ବିବିଧ ପ୍ରକାରର ଅଦ୍ଭୁତ ଜୀବନର ବିବର୍ତ୍ତନ ହେବାରୁ ଆମେ ବର୍ତ୍ତମାନ ଯେଉଁସବୁ ପଶୁପକ୍ଷୀମାନ ଦେଖୁଛୁଁ, ସେମାନଙ୍କର ବଂଶ ପୃଥିବୀରେ ପ୍ରଥମଥର ପାଇଁ ଆବିର୍ଭୂତ ହେଲା । ସେତେବେଳେ ପୃଥିବୀରେ ଗଣ୍ଡଓ୍ୟାନାଲାଣ୍ଡ ମହାଦେଶ ଥିଲା (ଆଫ୍ରିକା, ଦକ୍ଷିଣ ଆମେରିକା, ଦକ୍ଷିଣ ଇଉରୋପ, ମଧ୍ୟପ୍ରାଚ୍ୟ, ଭାରତ, ଅଷ୍ଟ୍ରେଲିଆ ଓ ଆଣ୍ଟାର୍କଟିକା) । ଏହା ଛଡ଼ା ଚାରୋଟି ଛୋଟ ମହାଦେଶ ଥିଲା । ଉତ୍ତର ଆମେରିକା ମହାଦେଶକୁ ଲରେନସିଆ କୁହାଯାଉଥିଲା । ସେତେବେଳେ ଜଳବାୟୁ ଉଷ୍ମ ଥିଲା ଏବଂ ପୂର୍ବ ଷ୍ଟ୍ରୋମାଟୋଲାଇଟ ଜୀବଗୁଡ଼ିକ ଥିଲେ । ଏହା ଆଗରୁ ମେରୁଦଣ୍ଡବିହୀନ ଜୀବମାନ ଥିଲେ । କିନ୍ତୁ ଏହି ସମୟରେ ମେରୁଦଣ୍ଡଯୁକ୍ତ ପ୍ରାଣୀ ହେଲେ । ବାୟୁମଣ୍ଡଳରେ ଅମ୍ଳଜାନ ବେଶୀ ଭାଗ ରହିଲା ।

କାମ୍ବ୍ରିୟାନ ସମୟରେ କାହିଁକି ଅସଂଖ୍ୟ ସଂଖ୍ୟକ ମେରୁଦଣ୍ଡବିହୀନ ଜୀବଙ୍କର ଆବିର୍ଭାବ ହେଲା, ତାହା କୁହେଳିକାମୟ । ଏହି ସମୟକୁ କେହି କେହି ପୃଥିବୀରେ ଜୀବନର ବିସ୍ଫୋରଣ ବୋଲି କହନ୍ତି । ଏହି ସମୟରେ ଜୀବର ଚାରିପାଖେ




ଟାଣ ଖୋଳ ରହିଲା, ଯଥା ଆନଥୋପ୍ରଡସ୍, ସ୍ପଞ୍ଜ,କୀଟ, ଟ୍ରିଲୋବାଇଟସ୍, ଶୈବାଳ, ପୁରାତନ ମାଛ । ଏହି ସମୟ ଶେଷରେ ବରଫ ଯୁଗ ଆରମ୍ଭ ହେଲା । ତେଣୁ ବହୁ ଜାତୀୟ ଜୀବଙ୍କର ମୃତ୍ୟୁ ହେଲା ।

## ଅରଡୋଭିସିୟାନ ଓ ସିଲୁରିଆନ ସମୟ

(୫୦୦ ନିୟୁତ ବର୍ଷରୁ ୪୩୮ ନିୟୁତ ବର୍ଷ ପୂର୍ବେ)

ଏହି ସମୟରେ ମହାଦେଶମାନଙ୍କର ଗତି ବା ଚଳନ ହୋଇ ବିରାଟକାୟ ମହାଦେଶ ଲରେସିଆ ଜନ୍ମ ହେଲା । ବରଫ ତରଳି ସମୁଦ୍ର ପତନ ବଢ଼ିଲା । ଆଗ୍ନେୟଗିରିରୁ ଉଦ୍‌ଗୀରଣ ହେଲା, ଭୂମିକମ୍ପ ହେଲା ଏବଂ ପାହାଡ଼ସବୁ ସୃଷ୍ଟି ହେଲା । ଏହି ସମୟରେ 'ସମୁଦ୍ର ଲିଲି' ଉଦ୍ଭିଦ, କ୍ଷାର ମାଛ, ବ୍ରାକିଓପଡ଼ ଜୀବ, କୋରାଲ, ମୋଲୁସେସ ଦେଖା ଦେଲେ । ପ୍ରଥମ ମେରୁଦଣ୍ଡଯୁକ୍ତ ଜୀବମାନେ ସୃଷ୍ଟି ହେଲେ । ସ୍ଥଳଭାଗରେ ପ୍ରଥମ ଉଦ୍ଭିଦ ଦେଖାଗଲା ।

# ଡେଭୋନିୟାନ ସମୟ

(୪୦୮ରୁ ୩୬୦ ନିୟୁତ ବର୍ଷ ପୂର୍ବେ)

ଏହି ସମୟରେ ବୃହତ୍ ଲରେସିଆ ମହାଦେଶର ସୃଷ୍ଟି ହେଲା । ନଦୀଗୁଡ଼ିକ ସମୁଦ୍ର କୂଳରେ ପଟୁମାଟି ପକାଇ ତ୍ରିକୋଣଭୂମିମାନ ସୃଷ୍ଟି କଲେ । ତେଣୁ ସ୍ଥଳଭାଗରେ ପ୍ରଥମଥର ପାଇଁ ଜୀବଗଠନ ସମ୍ଭବପର ହେଲା । ସ୍ଥଳଭାଗରେ ସବୁଜ ଉଦ୍ଭିଦ ଦେଖାଗଲା । ବର୍ଷା ହେଲା । କେତେକ ଜାଗାରେ ମରୁଡ଼ି ମଧ୍ଧ ଦେଖାଗଲା । ଜଙ୍ଗଲ ସବୁ ସୃଷ୍ଟି ହେଲା । ଗଛଗୁଡ଼ିକ ଏତେ ଘଞ୍ଚ ଥିଲା ଯେ ସେଗୁଡ଼ିକ ସୂର୍ଯ୍ୟକିରଣ ପାଇବା ପାଇଁ ଡେଙ୍ଗା ହେଲେ । ପଡ଼ିଥିବା ଶୁଖିଲା ଗଛ ଓ ପତ୍ର ଉପରେ ବେକ୍‌ଟେରିଆମାନେ କାମକରି ମାଟି ସୃଷ୍ଟି କଲେ । ବିଛା ଓ ତା'ର ବଂଶଧରମାନଙ୍କର ସୃଷ୍ଟି ହେଲା । ଏହି ସମୟରେ ମାଛମାନଙ୍କରେ ଫୁସ୍‌ଫୁସ୍ ଦେଖାଗଲା, ଯାହାଦ୍ୱାରା ସେମାନେ ନିଶ୍ୱାସ ପ୍ରଶ୍ୱାସ ନେଲେ । ଉଭୟ ସ୍ଥଳଚର ଓ ଜଳଚର ଜୀବଙ୍କର ଆବିର୍ଭାବ ହେଲା । ଚାରିପାଦ ଯୁକ୍ତ ସ୍ଥଳଚର ଜୀବ ଦେଖାଗଲେ । ଏହି ସମୟରେ ଗଛମାନଙ୍କରେ ମଞ୍ଜି ହେଲା । ଫୁଲ ଫୁଟୁଥିବା ଗଛର ଆବିର୍ଭାବ ହେଲା ।

# କାର୍ବୋନିଫେରସ୍ ସମୟ

(୩୬୦ ନିୟୁତ ବର୍ଷରୁ ୨୮୬ ନିୟୁତ ବର୍ଷ ଯାଏ)

ଏହି ସମୟରେ ଦୁଇଟି ବୃହତ୍ ମହାଦେଶ ଥିଲା — ଲରେସିଆ ଓ ଗଣ୍ଡଓ୍ୱାନାଲାଣ୍ଡ । ଜଳବାୟୁ ଥଣ୍ଡା ହେଲା । ଯେତେବେଳେ ସମୁଦ୍ର, ତଳପଡ଼ନରେ ଥିବା ସ୍ଥଳଭାଗକୁ ମାଡ଼ିବସିଲା ସେତେବେଳେ ସନ୍ତସନ୍ତିଆ ଜାଗାସବୁ ସୃଷ୍ଟି ହେଲା । ବାୟୁମଣ୍ଡଳରେ ବହୁ ପରିମାଣରେ ଅମ୍ଳଜାନ ଥିଲା । ବଡ଼ ବଡ଼ ଗଛର ଆବିର୍ଭାବ ହେଲା । ତଳପଡ଼ନରେ ଥିବା ଗଛ ଓ ଜଙ୍ଗଲଗୁଡ଼ିକ ଉପରେ ପାଣି ମାଡ଼ିଲା ଓ ପାଣିର ଅପସାରଣ ପରେ ନଦୀର ପଟୁମାଟିରେ ସେଗୁଡ଼ିକ ପୋତି ହୋଇ ପଡ଼ିଲା ।



ଏଥିଯୋଗୁଁ ପୋତି ହୋଇଥିବା ଗଛ ଓ ଜଙ୍ଗଲରୁ କୋଇଲା ସୃଷ୍ଟି ହେଲା । ନୂଆ କୀଟମାନଙ୍କର ସୃଷ୍ଟି ହେଲା ଓ ଏମାନେ ଉଡ଼ି ପାରିଲେ । ଏହି ସମୟରେ ଚାରିପାଦ ବିଶିଷ୍ଟ ସରୀସୃପ ଜନ୍ମ ହେଲେ ।

# ପରମିୟାନ ସମୟ

(୨୮୬ ନିୟୁତ ବର୍ଷରୁ ୨୪୮ ନିୟୁତ ବର୍ଷ ଯାଏ)

ଏହି ସମୟରେ ଭାରତ ବର୍ଷ ଏସିଆ ସହିତ ମିଶିଲା ଓ ସ୍ଥଳଭାଗମାନଙ୍କର ସଂଘର୍ଷ ହୋଇ ହିମାଳୟ ପର୍ବତଶ୍ରେଣୀ ସୃଷ୍ଟି ହେଲା । ଜୀବ ଭକ୍ଷଣକାରୀ ଜନ୍ତୁମାନଙ୍କର ସୃଷ୍ଟି ହେଲା । ଉଷ୍ମ ରକ୍ତ ଥିବା ସରୀସୃପମାନେ ବହୁସଂଖ୍ୟାରେ ଆବିର୍ଭାବ ହେଲେ । ଏମାନେ ବଡ଼ ଝିଟିପିଟି ପରି ଦିଶୁଥିଲେ । ମେସୋସରସ୍ ସୃଷ୍ଟି ହେଲା । ଚଞ୍ଚଳ ଚଳପ୍ରଚଳ କରୁଥିବା ଗର୍ଗନୋପସିଆନ୍ ଜୀବର ଆବିର୍ଭାବ ହେଲା । ସରୀସୃପମାନେ ଉଦ୍ଭିଦ ଖାଉଥିଲେ । ମାଂସାଶୀ ସରୀସୃପ ମଧ୍ୟ ଦେଖାଦେଲେ । ଏହି ସମୟରେ ବୃହତ୍ ଡାଇନୋସରମାନଙ୍କର ଆବିର୍ଭାବ ହେଲା । ଏହିଠାରୁ ଆରମ୍ଭ ହେଲା ସ୍ତନ୍ୟପାୟୀ ପ୍ରାଣୀର ଇତିହାସ । ଏହି ସମୟର ଶେଷବେଳକୁ ବହୁ ଜାତୀୟ ପଶୁପକ୍ଷୀଙ୍କର ଜଳବାୟୁ ପରିବର୍ତ୍ତନ ଯୋଗୁଁ ମୃତ୍ୟୁ ହେଲା ।

# ଟ୍ରାୟାସିକ ସମୟ

(୨୪୮ ନିୟୁତ ବର୍ଷରୁ ୨୧୩ ନିୟୁତ ବର୍ଷ ପୂର୍ବେ)

ଏହି ସମୟ ପୃଥିବୀରେ ଜୀବନର ମଧ୍ୟବର୍ତ୍ତୀକାଳୀନ ଯୁଗ । ଏହି ସମୟରେ ପାଗ ଶୁଖିଲା ହେଲା । ମରୁଭୂମିମାନ ସୃଷ୍ଟି ହେଲା । ବୃହତ୍ ଡାଇନୋସର, ଲାଇଷ୍ଟ୍ରୋମର, ମାଛ ଖାଉଥିବା ଝିଟିପଟି ସଦୃଶ ନଥୋସରମାନଙ୍କର ସୃଷ୍ଟି ହେଲା । ଏହି ସମୟର ଶେଷ ଭାଗକୁ ଉଡ଼ିପାରୁଥିବା ଜନ୍ତୁ (ଟେରୋସରସ୍—ଡେଣାଯୁକ୍ତ ସରୀସୃପ) ଦେଖାଦେଲେ । ଏହି ସମୟରେ ଛୋଟ ଛୋଟ ଡିନୋସରମାନେ ଦେଖାଦେଲେ ।

# ଜୁରାସିକ ସମୟ

(୨୧୩ ନିୟୁତ ବର୍ଷରୁ ୧୪୪ ନିୟୁତ ବର୍ଷ ପୂର୍ବେ)

ଆପଣମାନେ ଜୁରାସିକ ପାର୍କ ଚଳଚ୍ଚିତ୍ର ଦେଖିଥିବେ । ସେଥିରୁ ଏହି ସମୟରେ ବଞ୍ଚିଥିବା ବିରାଟକାୟ ପ୍ରାଣୀମାନଙ୍କ ବିଷୟରେ ସୂଚନା ପାଇଥିବେ । ଏହି ସମୟରେ ପାଞ୍ଜିଆ ବୃହତ୍ ମହାଦେଶ ଭାଙ୍ଗିବାକୁ ଆରମ୍ଭ କଲା । ଦକ୍ଷିଣରେ ଗଣ୍ଡୱାନାଲାଣ୍ଡ

ଥିଲା । ଏହି ସମୟରେ ପୃଥିବୀର ଜଳବାୟୁ ଉଷ୍ଣ ଓ ଶୁଷ୍କ ଥିଲା । ବର୍ଷା ହେବାରୁ ଭୂପୃଷ୍ଠରେ ସବୁଜ ଉଦ୍ଭିଦମାନ ଦେଖାଦେଲା । ବେଶୀ ଜଙ୍ଗଲ ସୃଷ୍ଟି ହେଲା । ନଦୀ ଓ ହ୍ରଦରେ ବହୁ ରକମର କୁମ୍ଭୀର ବାସ କଲେ । ନୂଆ କୀଟପତଙ୍ଗ ସୃଷ୍ଟି ହେଲା । ଟେରୋସର ନାମକ ଆକାଶରେ ଉଡ଼ିବାର ପ୍ରଥମ ଜନ୍ତୁର ଆବିର୍ଭାବ ହେଲା । ପ୍ରଥମ ଚଢ଼େଇ ଆର୍କଇକୋଟେରିଛର ଆବିର୍ଭାବ ହେଲା । ବହୁ ସ୍ତନ୍ୟପାୟୀ ପ୍ରାଣୀମାନେ ଦେଖା ଦେଲେ । ଏହି ସମୟରେ ବହୁଳ ଭାବରେ ବିରାଟକାୟ ଡିନୋସର ନାମକ ଜନ୍ତୁମାନେ ଦେଖା ଦେଲେ । ଗୋଟିଏ ଗୋଟିଏ ଡିନୋସରର ଉଚ୍ଚତା ୨୦ ମିଟର ଓ ଓଜନ ୮୦ ଟନ୍ ଥିଲା । ଗୋଟାଏ ଡିନୋସର ୧୫ଟା ହାତୀର ଆକାର ସଙ୍ଗେ ସମାନ ଥିଲା । ଏମାନଙ୍କର ବଂଶ ବୃଦ୍ଧି ହେଲା । କିନ୍ତୁ ୬୫ ନିୟୁତ ବର୍ଷ ପୂର୍ବରୁ ଏମାନେ ପୃଥିବୀ ପୃଷ୍ଠରୁ ନିଶ୍ଚିହ୍ନ ହୋଇଗଲେ ।

## କ୍ରେଟାସିୟସ୍ ସମୟ

(୧୪୪ ନିୟୁତ ବର୍ଷରୁ ୬୫ ନିୟୁତ ବର୍ଷ ପୂର୍ବେ)

ଲରେସିଆ ଓ ଗଣ୍ଡଓ୍ୱାନାଲାଣ୍ଡ ମହାଦେଶଦ୍ୱୟ ବିଚ୍ଛିନ୍ନ ହେବାକୁ ଆରମ୍ଭ କଲା । ଦକ୍ଷିଣ ଆମେରିକା ଓ ଆଫ୍ରିକା ପରସ୍ପରଠାରୁ ଅଲଗା ହେଲା । ବର୍ତ୍ତମାନର ଇଉରୋପ ସେତେବେଳେ ପାଣି ଭିତରେ ଥିଲା । ନୂତନ ଚିଙ୍ଗୁଡ଼ି, କଙ୍କଡ଼ାମାନଙ୍କର ଆବିର୍ଭାବ ହେଲା । ଝିଟିପିଟି ସଦୃଶ ମୋସାସର ଜନ୍ତୁ ଦେଖାଗଲେ । ସାପମାନଙ୍କର ଆବିର୍ଭାବ ହେଲା । ଫୁଲ ଫୁଟୁଥିବା ଗଛ ଓ ଉଦ୍ଭିଦ ସବୁ ଦେଖାଦେଲେ, ଯେଉଁଥିରୁ କୀଟପତଙ୍ଗ ପରାଗ ନେଇ ସଙ୍ଗମ କଲେ । ଫୁଲଗୁଡ଼ିକର ରଙ୍ଗିନ ପାଖୁଡ଼ାରୁ ମଧୁର ଗନ୍ଧ ବାହାରିଲା ଓ ମଧୁ ମଧ ସେଥିରେ ରହିଥିଲା । ନୂଆ ଗଛସବୁ ଓ ଜଙ୍ଗଲ ସୃଷ୍ଟି ହେଲା । ନୂଆ ଡିନୋସରସ୍ ଜନ୍ତୁଙ୍କର ଉଦ୍ଭବ ହେଲା । ଏମାନଙ୍କ ମଧ୍ୟରୁ ଟାଇରାନୋସରସ୍ ଅନ୍ୟତମ । ସ୍ତନ୍ୟପାୟୀ ମାର୍ଶୁପିୟାଲ ପ୍ରାଣୀ

ଜାତିର ଆବିର୍ଭାବ ହେଲା । କ୍ରେଟାସିୟସ ସମୟର ଶେଷ ଆଡ଼କୁ ଡାଇନୋସରସ୍ ଓ ଟେରାସରସ୍ ପ୍ରାଣୀ ନିଶ୍ଚିହ୍ନ ହୋଇଗଲେ । ଏହାର କାରଣ ଜଣା ନାହିଁ । ବୋଧହୁଏ ପୃଥିବୀର ଜଳବାୟୁ ପରିବର୍ତ୍ତନ ଯୋଗୁଁ ଏହା ହେଲା ।

## ପାଲିଓସିନ ସମୟ

(୬୫ ନିୟୁତ ବର୍ଷରୁ ୫୫ ନିୟୁତ ବର୍ଷ ପୂର୍ବେ)

ଏହି ସମୟରେ ନୂଆ ରକମର ସାମୁଦ୍ରିକ ଓ ଜଳୀୟ ଜୀବ ସୃଷ୍ଟି ହେଲା । ହାଡ଼ ଥିବା ମାଛ ଓ ଶାର୍କ ମାଛର ଆବିର୍ଭାବ ହେଲା । ସ୍ତନ୍ୟପାୟୀ ପ୍ରାଣୀମାନେ ବହୁ ସଂଖ୍ୟାରେ ଦେଖା ଦେଲେ । ଏମାନଙ୍କର ଶରୀରରେ ଲୋମ ଥିଲା । ଏମାନଙ୍କ ରକ୍ତ ଉଷ୍ମ ଥିଲା । ଏମାନେ ଶିଶୁଶାବକଙ୍କୁ ଜନ୍ମ ଦେଉଥିଲେ, ଯେଉଁମାନେ ସ୍ତନ୍ୟପାନ କରୁଥିଲେ । ସରୀସୃପମାନେ ଅଣ୍ଡା ଦେଉଥିଲେ । ପ୍ଲାଟିପସ୍ ଜୀବ ପ୍ରଥମେ ଦେଖା ଦେଲା ।

## ଇଓସିନ ସମୟ

(୫୫ ନିୟୁତ ବର୍ଷରୁ ୩୮ ନିୟୁତ ବର୍ଷ ପୂର୍ବେ)

ଏହି ସମୟରେ ପୃଥିବୀର ଜଳବାୟୁ ଉଷ୍ମ ଥିଲା । ପୃଥିବୀ ସବୁଜ ଉଦ୍ଭିଦ ଓ ଜଙ୍ଗଲରେ ଭରପୂର ଥିଲା । ନୂଆପ୍ରକାରର ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଆବିର୍ଭାବ ହେଲା । ମୂଷା ଜାତୀୟ ଜୀବ, ଘୋଡ଼ା, ଘୁଷୁରି, ରିନୋ, ହରିଣ ଓ ଓଟ ପ୍ରଭୃତିଙ୍କର ପୂର୍ବପୁରୁଷମାନଙ୍କର ଜନ୍ମ ହେଲା । ସମୁଦ୍ରରେ ତିମିର ଆବିର୍ଭାବ ହେଲା । ମହୁମାଛି ଓ ପିମ୍ପୁଡ଼ିମାନେ ଦେଖା ଦେଲେ । ହାତୀର ଜନ୍ମ ହେଲା ।

# ଓଲିଗୋସିନ ସମୟ

(୩୮ ନିୟୁତ ବର୍ଷରୁ ୨୫ ନିୟୁତ ବର୍ଷ ପୂର୍ବେ)

ଏହି ସମୟରେ ପୃଥିବୀର ଜଳବାୟୁ ଥଣ୍ଡା ହେଲା । ତେଣୁ ଟ୍ରପିକାଲ ଜଙ୍ଗଲ ଅନ୍ତର୍ଦ୍ଧାନ ହେଲା । ତୃଣଭୂମିମାନ ଓ ଟେମ୍ପୋରେଟ୍ ଜଙ୍ଗଲ ଦେଖାଗଲା । ତୃଣଭୋଜୀ ପ୍ରାଣୀମାନେ ଦେଖା ଦେଲେ । ବିଲେଇ ଓ କୁକୁରଙ୍କର ଉଦ୍ଭବ ହେଲା ।

# ମାଓସିନ ସମୟ

(୨୫ ନିୟୁତ ବର୍ଷରୁ ୫ ନିୟୁତ ବର୍ଷ ପୂର୍ବେ)

ଆଣ୍ଟାର୍କଟିକା ଅଞ୍ଚଳ ଏହି ସମୟରେ ବରଫାବୃତ ହେଲା । ପୃଥିବୀରେ ତୃଣଭୂମିମାନ ବଢ଼ିଲା । ଜେବ୍ରା, ଜିରାଫ, ହରିଣ, ମେଣ୍ଢାମାନଙ୍କର ପୂର୍ବପୁରୁଷମାନଙ୍କର ଆବିର୍ଭାବ ହେଲା । ଘାସ ଖାଇବା ପାଇଁ ଜୀବମାନଙ୍କର ଦାନ୍ତ ଉଦ୍ଭବ ହେଲା । ନୂଆ ଶୁଆ, ପେଲିକାନ, ପାରା, ଚଢ଼େଇମାନେ ଜନ୍ମ ହେଲେ ।

ମାଙ୍କଡ଼ମାନେ ଆଫ୍ରିକାରେ ଆବିର୍ଭାବ ହେଲେ । ଆଫ୍ରିକାରେ ବଣମଣିଷ ବା ଆଦିମ ମଣିଷ (ଏପ୍) ଯେଉଁମାନେ ମାଙ୍କଡ଼ଙ୍କଠାରୁ ଭିନ୍ନ ସେହିମାନଙ୍କର ଉଦ୍ଭବ ହେଲା । ଏହିଠାରୁ ମଣିଷ ଜାତିର ସୃଷ୍ଟି ଆରମ୍ଭ ହେଲା ।

# ପ୍ଲିଓସିନ ସମୟ

(୫ ନିୟୁତ ବର୍ଷରୁ ୬ ନିୟୁତ ବର୍ଷ ପୂର୍ବେ)

ପୃଥିବୀର ଜଳବାୟୁ ଥଣ୍ଡା ହେଲା । ଜୀବଜନ୍ତୁ ତୃଣଭୂମିରେ ଚରିଲେ । ହିପୋପଟାସସ୍‌ର ଆବିର୍ଭାବ ହେଲା ।

# ପ୍ଲେଷ୍ଟୋସିନ ଓ ହୋଲୋସିନ୍ ସମୟ

(୨ ନିୟୁତ ବର୍ଷ ପୂର୍ବରୁ ବର୍ତ୍ତମାନ ସମୟ ପର୍ଯ୍ୟନ୍ତ)

ପ୍ରଥମରୁ ବରଫ ଯୁଗ ଥିଲା । ତା'ପରେ ଜଳବାୟୁ ଉଷ୍ଣ ହେଲା । ହୋଲୋସିନ ଯୁଗ ଦଶହଜାର ବର୍ଷ ପୂର୍ବେ ଆରମ୍ଭ ହେଲା । ଏହି ସମୟରେ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଶରୀରରେ ଲୋମ ଦେଖାଦେଲା । ନୂଆ ବଡ଼ ବଡ଼ ପକ୍ଷୀ ଦେଖା ଦେଲେ । ମଣିଷ ଜାତିର ବୃଦ୍ଧି ଘଟିଲା । ଏହା ଆଧୁନିକ ଯୁଗର ସମୟ ।

# ମଣିଷ ଜାତିର ଆବିର୍ଭାବ ଓ ବିବର୍ତ୍ତନ

ଜୀବଜଗତରେ ମଣିଷ ସବୁଠାରୁ ଉନ୍ନତ । କେବଳ ମଣିଷ ନିଜର ଭାବ ପ୍ରକାଶ କରିପାରେ । ଉଦ୍ଭିଦ ଓ ପ୍ରାଣୀମାନେ ସେମାନଙ୍କର ସୃଷ୍ଟି ଆରମ୍ଭରୁ କ୍ରମଶଃ ପରିବର୍ତ୍ତନ ଦେଇ ବର୍ତ୍ତମାନ ଅବସ୍ଥାରେ ପହଞ୍ଚିଛନ୍ତି ବୋଲି ବୈଜ୍ଞାନିକମାନେ ମତ ପୋଷଣ କରନ୍ତି । ଏହି କ୍ରମ ପରିବର୍ତ୍ତନ ଯୋଗୁଁ କାଳକ୍ରମେ ସରଳରୁ ଜଟିଳ ଓ ଉନ୍ନତ ଜୀବମାନ ସୃଷ୍ଟି ହୋଇଛନ୍ତି । ଜୀବମାନଙ୍କର ଏହି କ୍ରମ ପରିବର୍ତ୍ତନ ପ୍ରକ୍ରିୟାକୁ ବିବର୍ତ୍ତନ କୁହାଯାଏ, ଯାହା ଭୂଗର୍ଭରୁ ମିଳୁଥିବା ନାନାଜାତିର ଜୀବାଶ୍ମ ବା ଫସିଲଦ୍ୱାରା ପ୍ରମାଣିତ ହୁଏ । ଜୀବମାନଙ୍କର ବିବର୍ତ୍ତନର ଗତି ଅତି ମନ୍ଥର । ପ୍ରାୟ ୧୦୦୦ ନିୟୁତ ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ ପ୍ରଥମ ଜୀବ ସୃଷ୍ଟି ହୋଇଥିବାର ବିଶ୍ୱାସ କରାଯାଏ । କ୍ରମଶଃ ମେରୁଦଣ୍ଡୀ ପ୍ରାଣୀମାନେ ସୃଷ୍ଟି ହେଲା ପରେ ବହୁ ନିୟୁତ ବର୍ଷ ପୂର୍ବେ ମାଛମାନେ ସୃଷ୍ଟି ହୋଇଛନ୍ତି । ଏହା ପରେ ଅନ୍ୟାନ୍ୟ ଶ୍ରେଣୀର ମେରୁଦଣ୍ଡୀ ପ୍ରାଣୀ ସୃଷ୍ଟି ହୋଇ ପ୍ରାୟ ୩୦୦ ନିୟୁତ ବର୍ଷ ପୂର୍ବେ ପ୍ରଥମ ସ୍ତନ୍ୟପାୟୀ ପ୍ରାଣୀ ସୃଷ୍ଟି ହୋଇଛି ବୋଲି ବିଶ୍ୱାସ କରାଯାଏ । ସର୍ବଶେଷରେ ମାତ୍ର ଏକ ନିୟୁତ ବର୍ଷ ପୂର୍ବେ ଆଦିମାନବ ବା ବଣମଣିଷର ସୃଷ୍ଟି ହେଲା । ଏହା କିନ୍ତୁ ଆଧୁନିକ ମଣିଷଠାରୁ ବହୁତ ଭିନ୍ନ ଥିଲା । ଆଧୁନିକ ମାନବର ମୋଟେ ୨୦ରୁ ୩୦ ହଜାର ବର୍ଷ ପୂର୍ବେ ସୃଷ୍ଟି ହୋଇଅଛି । ମଣିଷର ପୂର୍ବ ବଂଶଧର ସ୍ୱତନ୍ତ୍ର ଶ୍ରେଣୀର ବଣମଣିଷ ବା ଆଦିମଣିଷ ଥିଲେ, ଯେଉଁମାନଙ୍କୁ ଇଂରାଜୀରେ 'ଏପ୍' କୁହାଯାଉଥିଲା । ଏକ ନିୟୁତ ବର୍ଷ ପୂର୍ବେ ମଣିଷ ପ୍ରଥମେ ଆଫ୍ରିକାରୁ ବାହାରି ପୃଥିବୀର ଚାରିଆଡ଼କୁ ଖେଳି ଯାଇଥିଲା ।

ଜୀବାଶ୍ମ ବା ଫସିଲରୁ ଜଣାପଡ଼େ ଯେ ୧୪ରୁ ୮ ନିୟୁତ ବର୍ଷ ପୂର୍ବେ ରାମପିଥେକ୍ସ ନାମକ ଗୋଟିଏ ବଣମଣିଷ ବା 'ଏପ୍' ପୃଥିବୀରେ ଦେଖାଯାଇଥିଲା । ଏହା ପରେ ହୋମିନିଡ୍ ନାମକ ଯେଉଁ ମଣିଷ ଆସିଲେ, ତାହାର ଏହା ପ୍ରଥମ ବଂଶଧର । ରାମପିଥେକ୍ସ ନିଶ୍ଚିହ୍ନ ହେଲା ପରେ ଚାରି ନିୟୁତ ବର୍ଷ ଧରି ହୋମିନିଡ୍ ଥିଲେ ଯାହାର ଫସିଲ ମିଳି ନାହିଁ ।

ପ୍ରାୟ ୪ ନିୟୁତ ବର୍ଷ ପୂର୍ବେ ପୂର୍ବଆଫ୍ରିକାରେ ହୋମିନିଡ୍ ଜାତୀୟ ମଣିଷ ବାସ କରୁଥିଲେ । ସେମାନେ ସିଧା ଚାଲୁଥିଲେ । ଏମାନେ ଥିଲେ ଆମର ସିଧାସଳଖ ବଂଶଧର । ଏମାନଙ୍କର ଜୀବାଶ୍ମ ମିଳି ନାହିଁ । ଏମାନେ ଦୁଇଟି ଶ୍ରେଣୀରେ ବିଭକ୍ତ ଥିଲେ । ଗୋଟିଏ ଶ୍ରେଣୀକୁ ଅଷ୍ଟ୍ରାଲୋପିଥେକ୍ସ କହୁଥିଲେ । ଏମାନେ ଅଢ଼େଇ ନିୟୁତ ବର୍ଷ ପୂର୍ବେ ଦେଖା ଦେଇଥିଲେ । ଲୁସି ନାମକ ଏକ ମହିଳାର ଇଥିଓପିଆରେ ଜୀବାଶ୍ମ ମିଳିଥିଲା । କିନ୍ତୁ ଏମାନେ ଏକ ନିୟୁତ ବର୍ଷ ପୂର୍ବେ ନିଶ୍ଚିହ୍ନ ହୋଇଗଲେ । ପ୍ରଥମ ପ୍ରକୃତ ମଣିଷ ଅଢ଼େଇ ନିୟୁତ ବର୍ଷ ପୂର୍ବେ ଦେଖା ଦେଇଥିଲା । ଏମାନଙ୍କୁ 'ହୋମୋହେବିଲିସ୍' କୁହାଯାଉଥିଲା । ଏମାନେ ପଥରରେ କ୍ଷୁଦ୍ର ଅସ୍ତ୍ରଶସ୍ତ୍ର ତିଆରି କରୁଥିଲେ । ପ୍ରାୟ ଦେଢ଼ ନିୟୁତ ବର୍ଷ ପୂର୍ବେ 'ହୋମୋ ଇରେକଟସ୍' ବା ସିଧା ଚାଲୁଥିବା ମାନବର ଆବିର୍ଭାବ ହେଲା । ଏମାନେ ପଥରରୁ ହାତଟାଙ୍ଗିଆ ତିଆରି କରୁଥିଲେ । ଏମାନେ ଆଫ୍ରିକାରେ ବସବାସ କରୁଥିଲେ ଓ ନିଆଁ ଜାଳିବା ଏବଂ ଖାଦ୍ୟ ରୋଷେଇ କରିବା ଜାଣିଥିଲେ । ପାଞ୍ଚ ଲକ୍ଷ ବର୍ଷ ପୂର୍ବେ ଏମାନେ ଆଫ୍ରିକାରୁ ଏସିଆ ଓ ଇଉରୋପର ବିଭିନ୍ନ ଅଞ୍ଚଳକୁ ଯାଇଥିଲେ । ଏମାନେ ଶିକାର କରୁଥିଲେ ଓ ଦଳବଦ୍ଧ ହୋଇ କ୍ୟାମ୍ପ୍ କରୁଥିଲେ । ତା'ପରେ ଦୁଇଲକ୍ଷ ବର୍ଷ ମଧ୍ୟରେ ହୋମୋ ଇରେକଟସ୍‌ର ବିବର୍ତ୍ତନ ହୋଇ ବୁଦ୍ଧିଆ 'ହୋମୋ ସାପିୟେନ୍ସ' ବାହାରିଲେ । ଏମାନେ ଗୁମ୍ଫାରେ ରହୁଥିଲେ । ଏଥିମଧ୍ୟରୁ ଦୁଇଟି ଉପଶ୍ରେଣୀ ବାହାରିଲେ—ନିୟନ୍ଡର୍ଥାଲ ମଣିଷ ଓ ଆଧୁନିକ ମଣିଷ (ହୋମୋ ସାପିଏନ୍ସ ସାପିଏନ୍ସ) । ନିୟନଡର୍ଥାଲ ମଣିଷ ଇଉରୋପରେ ପ୍ରଥମେ ୧ ଲକ୍ଷ ୨୦ ହଜାର ବର୍ଷ ପୂର୍ବେ ଦେଖା ଦେଇଥିଲେ । ଏମାନେ ବୁଦ୍ଧିଆ ନ ଥିଲେ, କିନ୍ତୁ ମୃତ ଶରୀରକୁ ମାଟିରେ ପୋତୁଥିଲେ । ଏମାନେ ନିଶ୍ଚିହ୍ନ ହୋଇଗଲେ । ଏକ ଲକ୍ଷ ବର୍ଷ ପୂର୍ବେ ଦକ୍ଷିଣ ଆଫ୍ରିକାରେ ହୋମୋ ସାପିଏନ୍ସ ସାପିଏନ୍ସ ମଣିଷ ବାହାରିଲେ । ଏମାନେ ଖୁବ୍ ବୁଦ୍ଧିଆ ଥିଲେ ଓ ବୁଦ୍ଧି ପ୍ରୟୋଗ କରି ଚାଳିଶ ହଜାର ବର୍ଷ ପୂର୍ବେ ହାଡ଼ ଇତ୍ୟାଦିରୁ ତୀରର ଅଗ୍ରଭାଗ, ଛୁଞ୍ଚି ଇତ୍ୟାଦି ପ୍ରସ୍ତୁତ କରୁଥିଲେ । ପ୍ରାୟ ୫୦ ହଜାର ବର୍ଷ ପୂର୍ବେ


ହୋମୋ ସାପିଏନ
ଆଧୁନିକ ହୋମୋସାପିଏନ୍ସ
ଅଷ୍ଟ୍ରାଲୋପିଥେକସ୍
ହୋମୋ ହେବିଲିସ୍

ମଣିଷ ଜାତି ଦକ୍ଷିଣ ଆଫ୍ରିକାରୁ ଏସିଆ ଓ ଇଉରୋପରୁ ବିଭିନ୍ନ ଅଞ୍ଚଳକୁ ମାଡ଼ି ଯାଇଥିଲା ।

ବର୍ତ୍ତମାନର ମଣିଷକୁ ବିଭିନ୍ନ ଜାଗାରେ ବାସ କରୁଥିବା କକେସୀୟ, ମଙ୍ଗୋଲୀୟ, ନିଗ୍ରୋ, ଅଷ୍ଟ୍ରେଲୀୟ ଭାବରେ ବିଭକ୍ତ କରାଯାଉଛି । ମଣିଷର ବିବର୍ତ୍ତନ ବନ୍ଦ ହୋଇ ନାହିଁ ଓ ଚାଲିଛି । ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି ଯେ, ବର୍ତ୍ତମାନର ମଣିଷ, ଗୋଡ଼ରେ ବେଶୀ ଚଳପ୍ରଚଳ ନ ହୋଇ ଯନ୍ତ୍ର ବ୍ୟବହାର କରୁଥିବାରୁ ମଣିଷର ଭାବୀ ବଂଶଧରମାନଙ୍କ ପିଚା ବଡ଼ ବଡ଼ ହେବ ଏବଂ ମୁହଁ ଚେପ୍‌ଟା ହେବ । ପୁଣି ବର୍ତ୍ତମାନର ମଣିଷ ନରମ ରନ୍ଧା ଖାଦ୍ୟ ଖାଉଥିବାରୁ ଭବିଷ୍ୟତ ବଂଶଧରମାନଙ୍କର କଳଦାନ୍ତ ଆଉ ରହିବ ନାହିଁ । ଏସବୁ ବିବର୍ତ୍ତନ ଯୋଗୁଁ ମଣିଷର ଭବିଷ୍ୟତ ପ୍ରତି ଏକ ଦୃଷ୍ଟିପାତ ମାତ୍ର ।

# ପରିଶିଷ୍ଟ

| ଯୁଗ | ସମୟ | ନିୟୁତବର୍ଷ ପୂର୍ବେ | ଘଟଣାବଳୀ |
|---|---|---|---|
| ୧ | ୨ | ୩ | ୪ |
| ପାଲେଓଜୋଇକ | ପ୍ରିକାମ୍ବ୍ରିୟାନ | ୫୭୦ରୁ ୪୬୦୦ | ପୃଥିବୀର ଭୂପୃଷ୍ଠ ଏବଂ ବାୟୁମଣ୍ଡଳ ଗଠିତ ହୋଇଥିଲା । ଏହି ସମୟରେ ପୃଥିବୀ ଉଷ୍ଣ ଥିଲା ଓ ପରେ ଶୀତଳ ହେବାକୁ ଆରମ୍ଭ କଲା । ଏହି ସମୟରେ ତିନୋଟି ବରଫ ଯୁଗ ଆସିଥିଲା । ୩.୫ ବିଲିୟନ ବର୍ଷ ପୂର୍ବେ ଏକକୋଷୀ ବା ସେଲ ବିଶିଷ୍ଟ ଜୀବର ଉଦ୍ଭବ ହେଲା । ଅମ୍ଳଜାନ ବାୟୁମଣ୍ଡଳରେ ବଢ଼ିବାରୁ ୧.୪ ବିଲିୟନ ବର୍ଷ ପୂର୍ବେ ବହୁକୋଷୀ ବିଶିଷ୍ଟ ଜୀବର ଉଦ୍ଭବ ହେଲା । |
| | କାମ୍ବ୍ରିୟାନ | ୫୦୦ରୁ ୫୭୦ | ଗଣ୍ଡୱାନାଲାଣ୍ଡ ସୁପର ମହାଦେଶ ଗଠିତ ହେଲା । ଅନ୍ୟ ୪ଟି ଛୋଟ ମହାଦେଶ ମଧ୍ୟ ଗଠିତ ହୋଇଥିଲା । ଏହି ସମୟର ଶେଷ ଭାଗରେ ବରଫ ଯୁଗ ହେଲା । ବାୟୁମଣ୍ଡଳରେ ଅମ୍ଳଜାନ ବଢ଼ିଲା । ବିବର୍ତ୍ତନ ଯୋଗୁଁ ହଠାତ୍ ଜୀବଜନ୍ତୁ ବିଶେଷତଃ ମାଛର ଉଦ୍ଭବ ହେଲା । ଶୈବାଳ (algae)ଓ ସମୁଦ୍ର ଦଳ (seaweed)ର ସୃଷ୍ଟି ହେଲା । |
| | ଅରଡୋଭିସିୟାନ | ୪୩୮ରୁ ୫୦୦ | ଇଉରୋପ ଓ ଆଫ୍ରିକା ମଧ୍ୟରେ ସମୁଦ୍ରର ଉଦ୍ଭବ । କାମ୍ବ୍ରିୟାନ ସମୟର ବରଫ ତରଳି ଥିଲା ଏବଂ ସମୁଦ୍ର ପତନ ବଢ଼ିଥିଲା । ଏହି ସମୟର ଶେଷରେ ପୁଣି ବରଫ ଯୁଗ ଆସିଲା । ମାଛ ଓ ଅନ୍ୟାନ୍ୟ ଜୀବଙ୍କର ସଂଖ୍ୟା ବଢ଼ିଲା । ଭୂଭାଗରେ ଉଦ୍ଭିଦର ଉତ୍ପତ୍ତି ହେଲା । |
| | ସିଲୁରିଆନ୍ | ୪୦୮ରୁ ୪୩୮ | ଲରେସିଆ ମହାଦେଶ ଗଠନ । ଆଗ୍ନେୟଗିରିରୁ ଉଦ୍‌ଗୀରଣ । ନୂଆ ପର୍ବତ ଶ୍ରେଣୀ ଗଠିତ ହେଲା । ଏହି ସମୟର ଆରମ୍ଭରେ ବରଫ ଯୁଗ ଥିଲା ଏବଂ ବରଫ ତରଳିଲାରୁ ଜଳବାୟୁ ଉଷ୍ଣ ହେଲା । ସମୁଦ୍ର ବିଛା, ମାଛ ଇତ୍ୟାଦିର ବୃଦ୍ଧି ଓ ସମୁଦ୍ରରୁ ଜୀବ ସ୍ଥଳଭାଗକୁ ଆସିଥିଲେ । ଉଦ୍ଭିଦମାନ ପାଣି କୂଳରେ ଉଦ୍ଭବ ହେଲେ । |
| | ଡେଭୋନିୟନ୍ | ୩୬୦ରୁ ୪୦୮ | ମହାଦେଶମାନଙ୍କର ଚଳନ । ସମୁଦ୍ର ପତନ ହ୍ରାସ । ଜଳବାୟୁ ଉଷ୍ଣ ହେଲା । ବୃଷ୍ଟିପାତ ଓ ମରୁଡ଼ି ଯୋଗୁଁ ବହୁ ଅଞ୍ଚଳ ମରୁଭୂମି । ଶାର୍କ ମାଛର ବିବର୍ତ୍ତନ । ବୁଢ଼ିଆଣୀ, କୀଟପତଙ୍ଗ ସ୍ଥଳଭାଗକୁ ଆସିଲେ । ଏହି ସମୟର ଶେଷ ଭାଗରେ ଉଭୟ ସ୍ଥଳଚର ଓ ଜଳଚର ପ୍ରାଣୀର ଉଦ୍ଭବ ହେଲା । ସ୍ଥଳଭାଗରେ ଉଦ୍ଭିଦର ବୃଦ୍ଧି ଓ ଜଙ୍ଗଲ ସୃଷ୍ଟି ହେଲା । |

| ୧ | ୨ | ୩ | ୪ |
|---|---|---|---|
| | କାର୍ବୋନିଫେରସ | ୨୮୬ରୁ ୩୬୦ | ମହାଦେଶମାନଙ୍କର ଚଳନ ଯୋଗୁଁ ପର୍ବତ ଶ୍ରେଣୀ ସୃଷ୍ଟି । ସନ୍ତସନ୍ତିଆ ଭୂମି । ଜଙ୍ଗଲର ଅଭୂତପୂର୍ବ ବୃଦ୍ଧି ଯୋଗୁଁ ବାୟୁମଣ୍ଡଳରେ ଅମ୍ଳଜାନ ବେଶୀ । ଏହା ପରେ ପୃଥିବୀ ଶୀତଳ ହେଲା ଓ ଦୁଇଟି ବରଫ ଯୁଗ ଆସିଲା ।ଆମୋନିଏଟ୍‌ର ଉଦ୍ଭବ । ପ୍ରଥମ ସରୀସୃପର ଉଦ୍ଭବ । ବଡ଼ ବଡ଼ ଗଛ ଓ ଜଙ୍ଗଲ ସୃଷ୍ଟି । ଏଗୁଡ଼ିକ ପୋତି ହେବା ଫଳରେ କୋଇଲାର ସୃଷ୍ଟି । |
| | ପର୍ମିୟାନ | ୨୪୮ରୁ ୨୮୬ | ସୁପର ମହାଦେଶ ପାଞ୍ଜିଆର ସୃଷ୍ଟି । ଏହି ସମୟର ଆରମ୍ଭରୁ ବରଫ ଯୁଗ ହେଲା । ଗଣ୍ଡୱାନାଲାଣ୍ଡ ଉତ୍ତରକୁ ଗତି କଲା ଓ ଉଷ୍ମ ହେଲା । ବରଫ ତରଳିଲା । ଇଉରେସିଆ ଉଷ୍ମ ଓ ଶୁଷ୍କ ହୋଇ ମରୁଭୂମିର ସୃଷ୍ଟି ହେଲା । coralର ସୃଷ୍ଟି । ମେସୋମର ଇତ୍ୟାଦି ଜଳଚର ସରୀସୃପ ସୃଷ୍ଟି । ଏଗୁଡ଼ିକ ପରେ ସ୍ଥଳଭାଗକୁ ଗଲେ । ଏହି ସମୟର ଶେଷ ଭାଗରେ ଜୀବଜଗତର ଶତକଡ଼ା ୫୦ ଭାଗର ବିଲୋପ ଘଟିଲା । ଜଙ୍ଗଲର ଅଭିବୃଦ୍ଧି । |
| ମେସୋଜୋଇକ ଯୁଗ | ଟ୍ରାୟାସିକ | ୨୧୩ରୁ ୨୪୮ | ପାଞ୍ଜିଆ ମହାଦେଶ ଭାଙ୍ଗିଲା । ଆଟଲାଣ୍ଟିକ ମହାସାଗରର ଉତ୍ପତ୍ତି । ଜଳବାୟୁ ଉଷ୍ମ ଓ ଶୁଷ୍କ ହେବାରୁ ବିରାଟ ମରୁଭୂମିର ସୃଷ୍ଟି । ଡିନୋସରସ୍ ବୃହତ୍‌କାୟ ଜୀବର ଉତ୍ପତ୍ତି । ବେଙ୍ଗ ଓ କଇଁଚ ଓ କୁମ୍ଭୀରର ଉତ୍ପତ୍ତି । ପ୍ରଥମ ସ୍ତନ୍ୟପାୟୀ ପ୍ରାଣୀର ଉଦ୍ଭବ । କନିଫରସ ଗଛର ସୃଷ୍ଟି । |
| | ଜୁରାସିକ | ୧୪୪ରୁ ୨୧୩ | ନୂଆ ପର୍ବତ ଶ୍ରେଣୀର ସୃଷ୍ଟି । ସମୁଦ୍ରର ଭୂଭାଗକୁ ଆକ୍ରମଣ କଲା । ଉଷ୍ମ ଓ ଶୁଷ୍କ ଜଳବାୟୁ ପରେ ଆର୍ଦ୍ର ହେଲା । ପ୍ରଥମ ପକ୍ଷୀର ଆବିର୍ଭାବ । ସାଇପ୍ରେସ୍, ପାଇନ ଓ ରେଡଉଡ୍ ଗଛର ଉତ୍ପତ୍ତି । |
| | କ୍ରେଟାସିୟସ୍ | ୬୫ରୁ ୧୪୪ | ଭୂଭାଗ ଜଳଦ୍ୱାରା ପ୍ଳାବିତ । ମହାଦେଶମାନ ବିଚ୍ଛିନ୍ନ ହେଲେ । ପ୍ରଥମେ ପୃଥିବୀର ଜଳବାୟୁ ଉଷ୍ମ ଓ ଆର୍ଦ୍ର ଥିଲା ପରେ ଶୀତଳ ହେଲା । ସାପ, ନୂଆ ଡିନୋସର, କୀଟପତଙ୍ଗର ସୃଷ୍ଟି । ଏହି ସମୟର ଶେଷରେ ବହୁ ପ୍ରାଣୀଙ୍କର ବିଲୋପ । ବିଶେଷତଃ ଡିନୋସରମାନଙ୍କର ବିଲୋପ । ଫୁଲ ଗଛର ଉଦ୍ଭବ । କୀଟପତଙ୍ଗ ଦ୍ୱାରା ପରାଗ ସଙ୍ଗମ ଫଳରେ ଗଛର ସୃଷ୍ଟି । |
| ଆଧୁନିକ ସେନୋଜୋଇକ | ପାଲିଓସିନ୍ | ୫୫ରୁ ୬୫ | ମହାଦେଶମାନଙ୍କର ଚଳନ ଫଳରେ ବିଚ୍ଛିନ୍ନ ସ୍ଥଳଭାଗର ସୃଷ୍ଟି । ସ୍ତନ୍ୟପାୟୀ ପ୍ରାଣୀର ଭୂପୃଷ୍ଠରେ ଜନ୍ମ । ଫୁଲ ଫୁଟୁଥିବା ଗଛର ଅଭିବୃଦ୍ଧି । |

| ୧ | ୨ | ୩ | ୪ |
|---|---|---|---|
| | ଇଓସିନ | ୩୮ରୁ ୫୫ | ମହାଦେଶ ଚଳନ ଫଳରେ ନୂଆ ଭୂଭାଗ ସୃଷ୍ଟି ଓ ପର୍ବତ ଶ୍ରେଣୀର ସୃଷ୍ଟି । ପୃଥିବୀର ଜଳବାୟୁ ଉଷ୍ମ ଥିଲା । ସ୍ଥଳଭାଗରେ ବାଦୁଡ଼ି, ଲେମୁର, ଘୋଡ଼ା, ରିନୋରର ଉଦ୍ଭବ । ସ୍ତନ୍ୟପାୟୀ ତିମି ଇତ୍ୟାଦିଙ୍କ ଜଳଭାଗରେ ବସବାସ । ଜଙ୍ଗଲର ବ୍ୟାପକ ଅଭିବୃଦ୍ଧି । |
| | ମାଓସିନ | ୫ରୁ ୨୫ | ଭାରତ ସହ ଏସିଆ ମହାଦେଶର ସମ୍ପର୍କ ଓ ହିମାଳୟ ପର୍ବତ ଶ୍ରେଣୀର ଉତ୍ପତ୍ତି । ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ବିବର୍ତ୍ତନ । ହାତୀମାନଙ୍କର ଉଦ୍ଭବ, ମାଙ୍କଡ଼ ଓ (APE) ବଣମଣିଷ ବା ଆଦିମଣିଷମାନଙ୍କର ଉଦ୍ଭବ । ତୃଣଭୂମିର ଅଭିବୃଦ୍ଧି । |
| | ପ୍ଲିଓସିନ | ୨ରୁ ୫ | ବର୍ତ୍ତମାନ ମହାଦେଶମାନଙ୍କର ସ୍ଥିତି ଏହି ସମୟରେ ହୋଇଥିଲା । ଉତ୍ତର ଗୋଲାର୍ଦ୍ଧ ଓ ଦକ୍ଷିଣ ଆମେରିକାରେ ବରଫାବୃତ । ପୃଥିବୀର ଜଳବାୟୁ ଶୀତଳ ହେଲା । ଚରୁଥିବା ସ୍ତନ୍ୟପାୟୀ ପ୍ରାଣୀର ଉତ୍ପତ୍ତି । ମଣିଷର ପୂର୍ବପୁରୁଷର ଆଫ୍ରିକାରେ ଉଦ୍ଭବ । ଜଳବାୟୁ ଶୀତଳ ହେବା ପରେ ଜଙ୍ଗଲ ବଦଳରେ ତୃଣଭୂମିର ସୃଷ୍ଟି । |
| | ପ୍ଲେଷ୍ଟୋସିନ୍ | ୦.୦୧ରୁ ୨ | ବୃହତ୍ ବରଫ ଯୁଗ ଆରମ୍ଭ, ଯାହା ବର୍ତ୍ତମାନ ଚାଲିଛି । ଏହା ମଧ୍ୟରେ ଉଷ୍ମ ସମୟ ମଧ୍ୟ ଆସିଛି । ଲୋମ ଥିବା ସ୍ତନ୍ୟପାୟୀ ପ୍ରାଣୀର ଉତ୍ପତ୍ତି ଏବଂ ବହୁ ବଂଶର ବିଲୋପ । ମଣିଷର ବିବର୍ତ୍ତନ । ତୃଣଭୂମିର ଅଭିବୃଦ୍ଧି । |
| | ହୋଲୋସିନ | ବର୍ତ୍ତମାନ ସମୟ | ବର୍ତ୍ତମାନ ବରଫ ଯୁଗର ଉଷ୍ମ ସମୟ ଚାଲୁଛି । ସମୁଦ୍ର ପତନର ବୃଦ୍ଧି । ମାନବ ସଭ୍ୟତାର ଅଭିବୃଦ୍ଧି । ଚାଷ କାର୍ଯ୍ୟ ଆରମ୍ଭ ଓ ଫସଲ ଅମଳ । |